# କବିତା ଚୟନ

( ପ୍ରଥମ ଭାଗ )




ଉତ୍କଳ ବିଶ୍ୱବିଦ୍ୟାଳୟ

# କବିତା ଚୟନ

## ପ୍ରଥମ ଭାଗ

[ ଇଣ୍ଟରମିଡ଼ିଏଟ୍ ଶ୍ରେଣୀ ନିମନ୍ତେ ବାଧ୍ୟତାମୂଳକ ପାଠ୍ୟକ୍ରମ ]




ପ୍ରଥମ ସଂସ୍କରଣ

ତା ୨୭, ଅଗଷ୍ଟ ୧୯୮୧

ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରକାଶନ

ମୂଲ୍ୟ—୪୦ଟଙ୍କା ମାତ୍ର

# କୃତଜ୍ଞତା ସ୍ୱୀକାର

ଏହି ସଂକଳନରେ ଆଧୁନିକ ଯୁଗର କେତେକ କବିଙ୍କ କବିତା ସ୍ଥାନିତ ହୋଇଅଛି । ଓଡ଼ିଆ ସାହିତ୍ୟର ପ୍ରତିନିଧିତ୍ୱ କରୁଥିବା ଏହି ସଂକଳନଟି ଉତ୍କଳ ବିଶ୍ୱବିଦ୍ୟାଳୟର ଅଗଣିତ ଛାତ୍ରଛାତ୍ରୀ ଇଣ୍ଟରମେଡ଼ିଏଟ୍ ଶ୍ରେଣୀମାନଙ୍କରେ ବାଧ୍ୟତାମୂଳକଭାବେ ପଢ଼ିବାର ସୁଯୋଗ ପାଇବେ । ଏ ଗୌରବ କେବଳ ଉତ୍କଳ ବିଶ୍ୱବିଦ୍ୟାଳୟର ନୁହେଁ, ସଂପୃକ୍ତ କବି ଓ ସେମାନଙ୍କର ଉତ୍ତରାଧିକାରୀମାନଙ୍କର ମଧ୍ୟ । ଏହି ପୁସ୍ତକସ୍ଥ କବିତାଗୁଡ଼ିକ ଓଡ଼ିଶାର ଜାତୀୟ ସଂପତ୍ତି ରୂପେ ବିବେଚିତ ହେବା କଥା । ତେଣୁ ସମକାଳୀନ କବି ବା ମୃତ କବିଙ୍କ ଉତ୍ତରାଧିକାରୀମାନଙ୍କ ନିକଟରେ ଉତ୍କଳ ବିଶ୍ୱବିଦ୍ୟାଳୟ ଏକାନ୍ତ କୃତଜ୍ଞ ।

—o*o—

# ସୂଚୀପତ୍ର

# ତୋ ପାଦେ ମୋର ନମସ୍କାର

ଜଗନ୍ନାଥ ଦାସ

ହେ ନାଥ ନମୁଁ ତୋ ଶ୍ରୀଧର
ଆଦ୍ୟ ପୁରୁଷ ତୁ ଈଶ୍ୱର
ପ୍ରକୃତିପଟଳ ତୋର ବାସ
ଏଣୁ ପ୍ରାଣୀଙ୍କି ଅପ୍ରକାଶ
ଜନ୍ତୁଙ୍କ ଅନ୍ତର ବାହାରେ
ତୋ ବିନୁ ଅନ୍ୟ ନାହିଁ ଆରେ । ୧୮ ।

ଆହ୍ଲାଦ ମାୟା ସବଳକା
ନିର୍ଲେପ ରୂପେ ଥାଉ ଏକା
ଇଚ୍ଛା ସୃଜଣ୍ଣ ତୁଳେ ପୁଣ
ଅବ୍ୟକ୍ତ ବ୍ରହ୍ମାରୂପ ଧରି
ତୋହର ମାୟା ସାର ନରେ
ମେ ତୋତେ କାଟିବ କେମନ୍ତେ
ଭକ୍ତଙ୍କ ମଧ୍ୟେ ସେ ନାୟକ
ସେମନ୍ତ ନାଟେ ମୋହେ ଲୋକ
ନାନା କାରଣି ମେ ଭିଆଇ
ନୃତ୍ୟକାରଙ୍କ ସେ ନଚାଇ
ଦେଖନ୍ତା ପ୍ରାଣୀ ମନ ମୋହେ
ନଷ୍ଟେ ବସ୍ତୁରେ ସତ୍ୟ ନୋହେ । ୧୯ ।

ପରମହଂସ ସାକ୍ଷାଗୁଣେ
ନିର୍ମଳ ଚେତା ମୁନିଗଣେ
ଦୃଢ଼ ଭକତି ଯୋଗମତେ
ଧ୍ୟାନ କରନ୍ତି ଅବିରତେ
ସେ ଭକ୍ତି ଯୋଗରେ ବନ୍ଧନ
କାହୁଁ ଦେଖିବୁ ତ୍ରିଗୁଣଜନ । ୨୦ ।

ତୁ ନାଥ ! କୃଷ୍ଣ ଅବତାରେ
ପ୍ରକାଶ ବସୁଦେବ ଘରେ
ଦେବକୀ ଉଦରେ ସମ୍ଭବ
ଏଣୁ ତୋ ନାମ ବାସୁଦେବ
ସକଳ ଜନ୍ତୁ ହୃଦ ଗତେ
ତୋର ବିଜୟ ଅସ୍ମୀତଚିତ୍ତେ
କୁମାର ରୂପେ ନନ୍ଦ ଘରେ
ତୋର ବିହାର ଗୋପପୁରେ
ଇନ୍ଦ୍ର ଢଳାଦେ ବନମାଳି
ପର୍ବତ ବାମକରେ ତୋଳି
ରଖିଲୁ ଗୋପର ସମ୍ପଦ
ଏଣୁ ଯେ ନାମ ତୋ ଗୋବିନ୍ଦ
ତୁମ୍ଭଙ୍କୁ ମୋର ନମସ୍କାର
ତୋ ବିନୁ ନ ଜାଣଇ ଆର । ୨୧ ।

ପ୍ରନଷ୍ଟଜନେ ତୋର ବାସ
ନାଭିରୁ ପଙ୍କଜ ପ୍ରକାଶ
ପଙ୍କଜ ମାଳା ତୋର ଗଳେ
ବିହରୁ ଭୁବନ ମଣ୍ଡଳେ
ପଙ୍କଜ ଲୋଚନ ସୁନ୍ଦର
ନମଇଁ ପଙ୍କଜ ପୟର । ୨୨ ।

ଦେବକୀ ଦେବୀ କଂସଘରେ
ବନ୍ଦୀ ଯେ ଥିଲା ଶୋକଭରେ
ମୁଁ ପଞ୍ଚପୁତ୍ର ଘେନି ଯେବେ
ବନେ ବଞ୍ଚଇ ଦୁଃଖ ସବେ
ଦେବକୀ ପ୍ରାୟ ମୋତେ କରି
ଅଶେଷ ସଙ୍କଟୁ ଉଦ୍ଧରି । ୧୩ ।

ଭୀମକୁ ବିଷଲଡ଼ୁ ଦେଲେ
ତହୁଁ ରଖିଲୁ ତେତେବେଳେ
ଜତୁର ଘର ଦହନରୁ
ତୁ ନାଥ ! ତହୁଁ ଉଦ୍ଧରିଲୁ
ମୁଁ ପଞ୍ଚପୁତ୍ର ଘେନି ଯେବେ
ବନେ ବୁଲିଲି ଦୁଃଖସବେ
ହିଡ଼ିମ୍ବକାଦି ଯେ ରାକ୍ଷସ
ତହୁଁ ରଖିଲୁ ପୀତବାସ !
କପଟପଣା ବନବାସେ
ବନେ ବଞ୍ଚିଲୁ ନାନା କ୍ଲେଶେ
ଯୁଦ୍ଧେ ଦୁର୍ଜୟ ଶତ୍ରୁତ୍ରାସୁ
ତୁ ନାଥ ! ମୋ ପୁତ୍ରେ ଆଶ୍ୱାସୁ
ଦ୍ରୋଣପୁତ୍ରର ବ୍ରହ୍ମଶରୁ
ତହୁଁ ରଖିଲୁ ବଂଶମୋର । ୧୪ ।

ଏଣୁ ବିପଦେ ନ ଡରଇ
ଯେ ଦୁଃଖେ ତୋ ମୁଖ ଦେଖଇ
ସତ୍ୟେ ସେ ଦୁଃଖ ହେଉ ମୋର
ଯହିଁ ଦର୍ଶନ ଲଭେ ତୋର
ପରମ ଲୋକେ ଲଭେ ବାସ
ତୁ ନାଥ ! ଭକତ ବିଶ୍ୱାସ । ୧୫ ।

ଉତ୍ତମ ଭୂଲେ ଜନ୍ମ ହୋଇ
ବିଷ୍ଣୁ ସମ୍ପତ ନେବେ ଥାଇ
ବୁଦ୍ଧିର ମକରନ୍ଦ ଛନ୍ଦେ
ସେ ତୋତେ ପାଇବ କେମନ୍ତେ
ତୁ ନାଥ ! ଜଗତ ଜୀବନ
ତୁ ଅକିଞ୍ଚନ ଜନ ଧନ । ୧୬ ।
ତେଣୁ ଜନ ଧନ ତୃଷ୍ଣ
ପ୍ରବୃତ୍ତ ଭକ୍ତେ ନ ଜାଣଇ
ତୁ ନାଥ ଆତ୍ମାରାମ ଶାନ୍ତ
ନମଇଁ କୈବଲ୍ୟର ନାଥ । ୧୭ ।
ତୁ ନାଥ ! କାଳ ରୂପ ହୋଇ
ଅନାଦି ନିଧନ ବୋଲାଉ
ସମେ ତୁ ବସୁ ସର୍ବ ଦେହେ
ପ୍ରାଣୀ ଯେ ତୋର ମାୟା ମୋହେ
ଭଜନ୍ତି ଅନ୍ୟ ଅନ୍ୟ ସ୍ୱଭେ
କଳି କରନ୍ତି କଳିଯୁଗେ । ୧୮ ।
ତୋହର ଇଚ୍ଛା କେ ଜାଣିବ
ଶଙ୍କର ବନ୍ଧୁ ବ୍ରହ୍ମା ଶିବ
ତୋର ଚରଣ ଭଗବାନ
ଏ ନରଲୋକେ ବଡ଼ମ୍ବନ
ଯେଣୁ ତୋ ଶବ୍ଦ ସିଦ୍ଧ ନାହିଁ
ତୋ ଠାବେ ଭେଦ ବୁଦ୍ଧି କରି
ବଢନ୍ତି ସିଦ୍ଧ ଅନୁସଙ୍ଗ । ୧୯ ।
ତୁ ବିଷ୍ଣୁ ଆତ୍ମା ଅଜ ହରି
ଜନେ କହାବେ ଦେହ ଧରି
ପଶୁଙ୍କ ମଧ୍ୟେ ହେଉ ଜାତ
ଋଷିଙ୍କ ଘରେ ଋଷି ସୁତ

ଜଳ ଜନ୍ତୁଙ୍କ ମଧ୍ୟେ ବୁଦ୍ଧ
ନିହ୍ନୁ ମୀନ କୂର୍ମ ହୋଇ
ଏ କଥା ତୋତେ ବଡ଼ମ୍ବନ
ତୁ ଆଦ୍ୟ ଆତ୍ମା ନିରଞ୍ଜନ । ୩୦ ।

ଦଧି ମନ୍ଥନ ବେଳେ ଧରି
ସେଦିନେ ବାନ୍ଧିଲେ ନନ୍ଦ ନାରୀ
ଷଣ୍ଢ ଲୁଣ୍ଠ ଗୁଣ୍ଠ ଶୋଷି
ତା ଦେଖି ଭୂମିରେ ଲୁ ଲେଟି
ଚକ୍ଷୁ ଅଞ୍ଜନ ଘଷି କରେ
କାନ୍ଦ ଘଞ୍ଚିଲୁ ତା ପଶ୍ଚରେ
ବନ୍ଧନ ହସ୍ତରେ ଲୁଚଇ
ଭୟେ କମ୍ପଇ ତୋର ଦେହ
କିମ୍ପାଇଁ ତୋର ଭୟ ହେଲା ?
ମୋତେ ତ ସନ୍ଦେହ ଲାଗିଲା
ଭୟ ଯାହାର ନାମେ ଡରେ
ସେ କିମ୍ପା ଯଶୋଦାକୁ ଡରେ । ୩୧ ।

ତୁ ଦେବ ! ଯୋଗମାୟା ଅଂଶେ
ଜନ୍ମିଲୁ ଯଦୁ ରାଜବଂଶେ
ପୂର୍ବେ ଜନ୍ମ ନାହିଁ ତୋର
ଭକ୍ତ ହିତେ ଅବତାର
ଏଣୁ କହନ୍ତି ସାଧୁଜନ
ମଳୟୁ ଯେସନେ ଚନ୍ଦନ । ୩୨ ।

ଅଣରେ ଯେତେ ସାଧୁଜନ
ତୋ ଜନ୍ମ କରି ଅନୁମାନ
ବୋଲନ୍ତି ବସୁଦେବ ଘରେ
ଜନ୍ମିଲୁ ଖଳ ହରଣରେ

ପୂର୍ବେ କଠୋର ତପ କରି
ବର ମାଗିଲ ପୃଷ୍ଣି କରି
ତେଣୁ ଦେବକୀ ଗର୍ଭେ ଜାତ
ତୁ ଅଟୁ ଅନାଥର ନାଥ । ୩୩ ।

କେ କହେ ଦୈତ୍ୟଙ୍କରେ ମର୍ତ୍ତ୍ୟ
ବ୍ରହ୍ମା ସମୀପେ ଦୁଃଖ କହୁ
ତାହାର ଅର୍ଥେ ଭଗବାନ
ଜଳେ ଯେ ତୋହର ଶୟନ
ସର୍ବଦେବଙ୍କୁ ଘେନି ଗଲ
ତୋର ଚରଣେ ସ୍ତୁତି କଲ
କହିଲ ତୋ ଚରଣ ତଳେ
"ନାବ ବୁଡ଼ଇ ଯେସନ୍ତେ ଜଳେ
ତେମନ୍ତ ବୁଡ଼ଇ ଧରଣୀ
ତାହାକୁ ରଖ ଚକ୍ରପାଣି"
ତେଣୁ ତୁ ନର ରୂପ ଧରି
ଭୂମିମଣ୍ଡଳେ ଅବତରି । ୩୪ ।

କେ ବୋଲେ କାମ୍ୟ କର୍ମବଳେ
ଜନ୍ମୁ ଯେ ବୁଡ଼େ ଭବ ଜଳେ
ଅବିଦ୍ୟାକ୍ଲେଶିତ ତାଙ୍କ ଦେହ
ତାହାଙ୍କୁ ତରାଇବା ପାଇଁ
ଧ୍ୟାନ ଶ୍ରବଣ ମନ୍ତ୍ର ସ୍ମରୁ
ଲୀଳା ବିସ୍ତାରେ ଅବତରୁ । ୩୫ ।

ତୋର ଚରିତ କର୍ଣ୍ଣେ ଶୁଣି
ତୋର ମହିମା ମନେ ଗୁଣି
ତୋର ନାମକୁ ମୁଖେ କହୁ
ଆନନ୍ଦେ ରୋମାଞ୍ଚିତ ଦେହୁ

ଏଣୁ ପଶନ୍ତି ତୋ ଚରଣେ
ନଷ୍ଟିନ୍ତେ ତୋ ନାମ ସ୍ମରଣେ
ତୋର ଚରଣ ତାଙ୍କ ରଖେ
ଭବ ପ୍ରମାଦୁ ତରେ ସୁଖେ
ଯେ ପାଦେ ପଶିଲି ଶରଣ
ମୋତେ ନ ତେଜ ନାରାୟଣ । ୩୬ ।
ତୁ ଯେ ମୋହର ସୁତ ହେତେ
ଜନ୍ମିଲୁ ଏ ଘୋର ଜଗତେ
ତୋର ସୁହୃଦପଣେ ହେଣ
ତୋର ଚରଣେ ଆଶ୍ରା ହେଣ
ନରକେ ହଉ ତୋତେ ଧ୍ୟାନ
ତୋ ତତ୍ତ୍ୱ ନଜାଣନ୍ତି ଆନ
ବିରୋଧ ହେଉ ରାଜ କୁଳେ
ବଞ୍ଚନ୍ତି ତୋର ବାନ୍ଧବେଳେ । ୩୭ ।
କେବଳ ନାମ ରୂପ ତୋର
ମୋର ପୂର୍ବଙ୍କ ସୁଖ ଘର
ଯଦୁଙ୍କ କୁଳେ ତାହା ଚିନ୍ତି
ଏ ଭବ ଭୟେ ନ ଡରନ୍ତି
ତୋ ରୂପ ନ ଦେଖି ନୟନେ
ଇନ୍ଦ୍ରିୟ ଯେହ୍ନେ ଆସ୍ୱାଦନେ । ୩୮ ।
ଏ ମଣ୍ଡ ତୋର ପାଦ ଲାଗି
ଯେମନ୍ତ ଦଣଇ ସୌଭାଗ୍ୟୀ
ତୋ ଅବତାର ଯେବେ ଯିବ
ବିଧବା ପ୍ରାୟେକ ଦଶିବ । ୩୯ ।
ଏହା ଉପରେ ଯେତେ ଜନ
ଗ୍ରାମ ଔଷଧି ଗିରି ବନ
ସମୁଦ୍ର ଆଦି ଜଳ ସ୍ଥାନ
ଆଶ୍ରିତ ତୋହର ଚରଣ । ୪୦ ।

ହେ ବିଶ୍ୱ ଆତ୍ମା ବିଶ୍ୱେଶ୍ୱର
ମୁଁ ତୋର ଚରଣେ କିଙ୍କର
ଯାଦବ କୁଳେ ବୃଷ୍ଣି ବଂଶେ
ମୁଁ ଯେ ବନ୍ଧନ ସ୍ନେହପାଶେ
ତୁ ସେବେ ଶରଣ ସୋଦର
ଏ ସ୍ନେହ ପାଶ ଛେଦ ମୋର । ୪୧ ।
ହେ ନାଥ ! ଶ୍ରୀ ମଧୁସୂଦନ
ତୋର ଚରଣେ ମୋର ମନ
ସର୍ବ ବିଷୟୁ ଦୂରେ ତେଜି
ନିସ୍ତଳେ ରହୁ ନିତ୍ୟ ଭଜି
ଗଙ୍ଗାର ସ୍ରୋତ ଯେସନ୍ତେ ବହେ
ସେ ପୁଣି ସିନ୍ଧୁ ଜଳେ ରହେ । ୪୨ ।
ହେ ବୃଷ୍ଣି କୃଷ୍ଣ-ସଖା ❊ ତୁହି
ହେ କୃଷ୍ଣ-ଶ୍ରେଷ୍ଠ-ଯାଦବ ସ୍ୱାମୀ !
ଅବନୀ ରଖି ଅଧମୂଳ
ନାଶିଲୁ ଦୁଷ୍ଟ ଷଡିକୁଳ
ତୋତେ ଚିନ୍ତିଣ ସେ ଭଜନ୍ତି
ନିଶ୍ଚିନ୍ତେ ତୋ ଦେହେ ପଶନ୍ତି
ଗୋବିନ୍ଦ ଶରଣ ସୋଦର
ଭକତ ଜନ-ସୁଖ ଧର
ତୋ ଅବତାର ଏ ଜଗତେ
ଗୋରୁ ବ୍ରାହ୍ମଣ ଦେବଙ୍କତେ
ଅଖିଳ ଗୁରୁ ଯୋଗେଶ୍ୱର
ତୋ ପାଦେ ମୋର ନମସ୍କାର । ୪୩ ।



(ଭାଗବତ-ଅଷ୍ଟମ ଅଧ୍ୟାୟ-ପ୍ରଥମ ସ୍କନ୍ଧ)

# ଗ୍ରୀଷ୍ମଋତୁ

## ଦୀନକୃଷ୍ଣ ଦାସ

ରାଗ—ବସନ୍ତ ବରାଡ଼ୀ, ମଧୁପ ଚଞ୍ଚରୀ ବାଣୀ

କ୍ରମେ ମଧୁଶେଷ ହୋଇଲା ପ୍ରବେଶ ହୋଇଲା ଗ୍ରୀଷମ ସମୟେ
ଜଗମାର୍ଜି-କର ମହାଖରତର ଜମଲ କୁମାର ପରାୟେ
ସୁଜନେ, କି କହିବା ମହୀତପତ
ନରଭଳି ନୃତ୍ୟ ପଥିକ ପଦକୁ ସଂଗ୍ରାମଭୂମି ଅଙ୍ଗମତ । ୧ ।

କୁଟିଳ ନର୍ତ୍ତକୀ ଭ୍ରମରୀ ପରାୟେ ଭ୍ରମିଲେ ବାତଚକ୍ରମାନେ
କୁଟୁମ୍ବୀ-ଧ୍ୟାନରତ ମନ ପରାୟେ ସନ୍ତାପି ହେଲେ ଏକାନ୍ତନେ
ସୁଜନେ, କୃଶ ହୋଇଲା ନଦୀ ଜଳ
କାନ୍ତ ଘନରସ ବିରହେ ଯେମନ୍ତ ଦଶନ୍ତ ତରୁଣୀ କୁଳ । ୨ ।

କୁରଙ୍ଗ ନୟନା ନୟନ-ତରଙ୍ଗବଳ ମୃଗତୃଷ୍ଣା ଦିଶିଲେ
କଳାମେଘ-କୋଳେ ବିଜୁଳି ପରାୟେ ବନେ ବନଅଗ୍ନି ଦିଶିଲେ
ସୁଜନେ, କାଢ଼ି ତୃଣସ୍ୱନେ ଫୁଟନ୍ତି
କାଦମ୍ବ ସୁରତ କାଳେ ମନ ମନ ଶବଦ ପରାୟେ ଘଟନ୍ତି । ୩ ।

କୃପଣ ସାମନ୍ତ ସେବକ ପରାୟେ ତାପେ ଜଜର ସର୍ବାଙ୍ଗ
କାନ୍ତବନ୍ଧିତ କାନ୍ତା ପ୍ରାୟେ ହୋଇଲେ ସରସୀମାନେ ବେଶଅନ୍ତ
ସୁଜନେ, କେବଳ ଭଲ୍ଲୁକଙ୍କ ପ୍ରାୟେ
କଚ୍ଛପ, ମତ୍ସ୍ୟ, ମଣ୍ଡୁକମାନଙ୍କର ଦୁର୍ବଳ ହୋଇଗଲା କାୟେ । ୪ ।

କମଳ ସ୍ୱରଙ୍କେ କଳରବ ରଙ୍ଗେ ମହାଗହ୍ୱର ଆଶ୍ଳେଷ କର
କର୍ଦ୍ଦମରେ ପଙ୍କ ଫେନମୁଖେ-ରଙ୍ଗ ଗ୍ଳଡ଼ନ୍ତ ଗନ୍ଧର୍ବ ବଇଷ୍ଟ
ସୁଜନେ, କୁଞ୍ଜ ଭିତରେ ପକ୍ଷୀମାନେ
କେବଳ ଯୋଗୀଧ୍ୟାନ କଲା ପରିଯେ ବସିଲେ ରହିଲେ ମଉନେ ।୫।

କଣ୍ଠବାକୁ ପ୍ରାଣରକ୍ଷା ନିଜ ପ୍ରାଣ ପରକୁ ଦେଲା ପ୍ରାପ୍ତ ହୋଇ
ଭୋଳ ମୃଗ ଯାଇ ଭୟକୁ ପକାଇ ସିଂହ ସ୍ଥଳରେ ହେଲେ ସ୍ଥଳ
ଶୋଭଦେ, କୁଣ୍ଡଳୀକୁଳ ଏହି ରୂପେ
ତଳାପି ଜଳାପ ସ୍ଥଳରେ ରହିଲେ ଯାଇ ତପସ୍ୱିକ ଅଭସେ ।୬।

ବାହିଁଗଲା ବନଲତା ଶୋଷବନ କାନ୍ତହୀନ କାନ୍ତା ପରିଯେ
କରିଥିଲା ଯିନା ବସନ୍ତ ତାହାକୁ ନବ ପଲ୍ଲବେ ତୋଷମୟେ
ଶୋଭଦେ, ଭାଳେ ସେ ଅନ୍ତର ହୋଇଲା
କନ୍ଦର୍ପ ଦର୍ପ ରହିତ ହୋଇ ସଖା ଅଭାବେ ହୃଦରେ ଶୋଇଲା ।୭।

କୁଞ୍ଜେ କୁଞ୍ଜେ ବସି ଝିଙ୍କାର ଡାକଲେ ବାମକେଳି ବାଟ ପଡ଼ିଲା
କୁସୁମ ଭାଣ୍ଡ ମଣ୍ଡି ହୋଇ ଅର୍ଜୁନ ବିୟୋଗୀ ହୃଦୟ ଭାଙ୍ଗିଲା
ଶୋଭଦେ, କଉଁ ପଥିକ ତାପବଲେ
କରନ୍ତେ ଗମନ ଶ୍ରମପାଇ ଯାଇ ବସନ୍ତ ବଟ୍ଟ ପାଦତଳେ ।୮।

କୃପଣ ଧନ ସଞ୍ଚିଲା ପ୍ରାୟେ ମଧୁ ସଞ୍ଚିଲେ ମଧୁକରମାନେ
କେ ଜଳଛତ୍ର ପବିତ୍ରମାନ ଦେଲେ ବ୍ରାହ୍ମଣ କରେ ସ୍ଥାନେ ସ୍ଥାନେ
ସୁଜନେ, କଉଁ ଈଶ୍ୱର ଅନୁରକ୍ତ
କର୍ପୂର ଚନ୍ଦନ ଅଙ୍ଗେ ବୋଳି ହୋଇ ଧାରାମଣ୍ଡିତ ପୁରେ ରହି ।୯।

କେ ଗୀତ କବିତ୍ୱ ବେଣୁ ବୀଣା ନୃତ୍ୟରଙ୍ଗ ଦିନମାନ ହରନ୍ତି
କେ ବସି ଏକାନ୍ତେ କାମିନୀ ସଙ୍ଗତେ ଚନ୍ଦନ ପିଚକା ମାରନ୍ତି
ସୁଜନେ, କେ କରେ ନଜରା ବିହାର
କେ ସ୍ୱେଦ ଭୟରେ କରତଳୁ ତାଳବୃନ୍ତ ନ କରଇ ବାହାର ।୧୦।

ଯେ ଜନ ଶେଷରେ ଦିନକର-କରେ ତାପ ପାଇ ଜଳେ ବୁଡ଼ଇ
ଯେ ମହା ବଲ୍କଳେ ବସି ଶୀତ ସ୍ଥଳେ ଶୀତଳ ପବନ ଲୋଡ଼ଇ
ସୁଜନେ, କେତେ କହିବ ଏ ପ୍ରସଙ୍ଗ
କେବଳ ଶୀତ କାରକ ଦ୍ରବ୍ୟକୁ ଆନ ଲୋଡ଼ନ୍ତି ନାହିଁ ଅଙ୍ଗ । ୧୧ ।

( ରସ କଲ୍ଲୋଳ )



# ସେ ଜମ୍ବୁକଣ୍ଟକ ରାଜା

୪

## କବି ସମ୍ରାଟ ଉପେନ୍ଦ୍ରଭଂଜ

ଶୁଣ ଭୋ ଭବେ ଭାରତଖଣ୍ଡେ ପୁଣ୍ୟଧାମ
ଦେଖୁ ନାରାୟଣ ଦେଶ, ତେଣୁ ସେହି ନାମ, ଯେ ।

ଯେ ବ୍ରହ୍ମହତ୍ୟା-ପାତକ-ଉପାତକ ମଣ୍ଡ
କପାଳ ମୋଚନ ତ୍ରିଲୋଚନ ସାକ୍ଷୀ ସେହୁ ଯେ ।

ଗୀର୍ବାଣମତେ ନିର୍ବାଣ ସାରୂପ୍ୟକୁ ଦେଇ
ସାକ୍ଷୀପକ୍ଷୀ ଭରନ୍ତ ପ୍ରଥମା ରୂପେ ଥାଇ ଯେ ।

ଆପି କାଶୀଶ୍ୱର ବାସ କଲେ ଏହା ଜାଣି
ଅନ୍ୟ କ୍ଷେତ୍ର ସମସ୍ତଙ୍କ ଏ ମସ୍ତକମଣି ଯେ ।

ଶ୍ରୀମହାପ୍ରସାଦ ଚଦ୍ଧାରର ଘଣ୍ଟଘୋଷ
ଭକ୍ଷଣେ, ଶ୍ରବଣେ ଯେ କଲିକଷ୍ଟ-କଷ୍ଟ-ନାଶ ଯେ ।

ଉନ୍ନତ ପ୍ରାସାଦ ଚକ୍ରପତାକା ଉଡ଼ାଇ
ଏ ପ୍ରଦେଶେ ସମବର୍ତ୍ତୀ ପଟ୍ଟଣ ନାହିଁ କେହୁ ଯେ ।

ଯେ ଦୂର୍ଗ-ପରିଖା ତୀର୍ଥରାଜ ଗର୍ଜନରେ
କହେ, ଅବଗାହ ପାପବ୍ୟୂହ ଦହନରେ ଯେ ।

ଦାନ୍ତସବୁ ତାଡ଼ନରେ ଦେବ ଏ ପକାଇ
ଏ ଦାରୁବଣରୁ ଦୂରୁ ବଣିତ ପଳାଇ ଯେ ।

ସେ ଜମ୍ବୁକଣ୍ଟକ ରାଜା ସ୍ୱୟଂ ଜଗନ୍ନାଥ
ଭାରତବର୍ଷେ ଚକ୍ରବର୍ତ୍ତି ହେବାକୁ ସମର୍ଥ ଯେ ।

ଯାହେ ବନ୍ଦେ ସାର୍ବଭୌମ ବୋଲିବା କ୍ଷଣ
କୃଷ୍ଣାସନଙ୍କର ଶିର ଲଗିବାକୁ ଆଣ ଯେ ।

ଯାହା କଟାକ୍ଷ କୁଠାର ପତନ ମାତରେ
ଅନେକ ଦୁଃଖ ଅନେକ ଜନ୍ମକୁ ଛେଦପାରେ ଯେ ।

ଆର୍ତ୍ତଭଞ୍ଜନ ଦୀନବନ୍ଧୁ ନାମ ଶୁଣି
ଭରସା କରି ଆସନ୍ତି ଦୂର ଦେଶୁଁ ପ୍ରାଣୀ ଯେ ।

କରଯୋଡ଼ି ସମ୍ମୁଖରେ ଜଣାଏ ପକ୍ଷୀଧର
ଅର୍ଥିଜନ ଗୁହାରୀ କି ସାବଧାନ ହେବ ଯେ ।

ସ୍ନାନ ଗୁଣ୍ଡିଚା ଏ ବେଶ ସ୍ୱୟଂ ଲୀଳା ଯାର
ପତିତପାବନ ଅର୍ଥେ ପ୍ରାସାଦୁଁ ବାହାର ଯେ ।

ସ୍ୱର୍ଗରୁ ଏ ବର୍ଣ୍ଣନା-କାରକ ମୁଁ ହେଲି
ପୁଲକିତ ଶରୀରେ ହରିରେ ସ୍ତୁତି କଲି ଯେ ।

ଅଶ୍ୱତ୍ଥବଟର ବନ୍ଦେ ! ଅଣୁଦର କର
ମୁଖେ ମୁଖେ ଧର ନାନାବିଧ ଅବତାର ଯେ ।

ଭବ-ସିନ୍ଧୁ-ପୁଞ୍ଜିତ ହେ ଭବ ବୃନ୍ଦ
ଶୁଭଙ୍କରଙ୍କ ସଦାନନ୍ଦ ସଦାଶିବ ଯେ ।

କର୍ମ ଉପଲବ୍ଧ ତବ କୃପାରେ ହୋଇଛି
ଏବେ ମନୋରଥ ସାର୍ଥେ କି ସଂଶୟ ଅଛି ଯେ ।

( କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରୁ ସଂଗୃହୀତ )



# ସୀତା-ବିଳାପ

ବିଶ୍ୱନାଥ ଖୁଣ୍ଟିଆ

ଧନୁଧାରୀ ରଘୁନାଥ ଗଲେ ମୃଗ ମାରି
ଚଣ୍ଡାଳ ରାବଣ ମୋତେ ନେଉଅଛି ଧରି ।
କେ କହିବେ ଗୋ,
ସ୍ୱାମୀ କେଉଁଠେ ବାରତା ପାଇବେ ଗୋ ।

ଛଦ୍ମ କଥା ସେ ନ ଜାଣନ୍ତି ରଘୁନାନ,
ଛଳେ ମାୟାମୃଗ ମାରିବାକୁ ଗଲେ ବନ ।
ଯୋଗ ନାହିଁ ଗୋ,
କେ ଜାଣେ ଅବା ହେବ ତହିଁ ଗୋ ।

ଜାଣି ତ ନ ପାରି ପ୍ରଭୁ ମୋର ବୋଲେ ଗଲେ
ଜଗତ-କରତା ହୋଇ ମାୟାରେ ଭୁଲିଲେ ।
ଜୀବମାନେ ହେ,
ଶୁଣିଛ କି ଏଡ଼େ ମାୟା କର୍ମେ ହେ ।

ଝୁରି ଝୁରି ମୋର ଆଉ ନ ସରିବ ଦିନ,
ଛିନବସନ ଅଛି ନାଥ ନାଚନ୍ତି ନୟନ ।
ଯିବ ନାହିଁ ହେ,
ବାଞ୍ଛିବାକୁ ବୁଦ୍ଧି ଦିଶୁନାହିଁ ହେ ।

ନୀଳ ହେମ ତନୁ ଦେଖା ସ୍ୱପ୍ନ ହେବ ମୋର,
ନବୀନ-ପଙ୍କଜ-ମୁଖ ହୋଇଲେ ଅନ୍ତର ।
ବନଗିରି ହେ,
ଦେଖିଲେ କହିବ ଧନୁଧାରୀ ହେ ।

ଜପିସେ ଯେ ମୂର୍ଚ୍ଛ ମୋତେ ନ ପାଇନ୍ତୁ ସ୍ୱମ
ଟଳିଲ ନାହିଁ ସେନେହେ ଆଣିଲେ ସେ ବନ ।
ମୋର ବୋଲେ ଗୋ,
ଗୋଦାବରୀକୂଳେ ବାସକଲେ ଗୋ ।

ଠକ ପଣ କରି ମାୟାମୃଗ ଦେଖାଇଣ
ଠକ ମୋତେ ନେଇଅଛୁ ଲଙ୍କାର ରାବଣ ।
ଗୋପୀ ଭଣି ହେ,
ଦେଖିଲେ କହିବ ବୃପପାଣି ହେ ।



# ସମର ସଜ୍ଜା

( ସମର ତରଙ୍ଗରୁ )

ବ୍ରଜନାଥ ବଡ଼ଜେନା

ରାଗ—ପାହ୍ନାଡ଼ିଆ କେଦାର

୧

ସାରା ଫଉଜ ହେଲେ ତୟାର
ମୁସଦ୍ଦି ମୁନ୍ସୀ ହେଲେ ବାହାର
ପାଗା ସୁଆର କି ଜମାଦାର, କି ସରଦାର ଯେ ।
ଯେ ଯାହା ମୁତାବକ ସମ୍ଭାର
ଦୌଲତ ଯେଣ ହେଲେ ହାଜର,
ମଜୁର୍ ଦର ହୁକୁମ ପାଇ, ଯାନ୍ତି ସତ୍ୱର ଯେ ।
କେହୁ ଚଢ଼ିଛି ତାଜିବାଜୀ ଉପର ଯେ,
ରଙ୍ଗ-ଅଙ୍ଗା ଅଙ୍ଗକୁ ଢଙ୍ଗେ ସୁନ୍ଦର ଯେ ।
ଢାଲେକ ପୃଷ୍ଠ ବାମ ହସ୍ତରେ
ଖଡ୍ଗ କଷିଛି ଦକ୍ଷିଣ କରେ,
ମଲ୍ଲ ପଗଡ଼ି ଭଲ ମାନଛି, ଶିରକୁ ତାର ଯେ ।

୨

କେ ଅଛି ତାଜି ବାଜି ଜି ଚଢ଼ି
ଧର ନେଉଛି ଯୋଡ଼ିକ ଯୋଡ଼ି,
ଉଣାଦ୍ୱ ଚଲେ ମସ୍ତକ ଗୁଡ଼ି, ହିଦେ ସେ ଜଡ଼ି ଯେ ।

କେହୁ ଭୁରୁଙ୍ଗ ପିଠିରେ ବସି
ଢାଲ ଦରଛୁ ଧରଛୁ ଖଣ୍ଡି,
ଦନ୍ତରେ ଜଣ ଦେଇଛୁ ଖୋସି, ଲମ୍ବିଛୁ ଦାଢ଼ି ଯେ ।
କେହୁ ସୁଆର ହୋଇ ଅଣଆସୂଣ୍ଠ ଯେ,
ଯେତେ ସମ୍ଭାଳିଲେ ସେ ନୋହେ ସ୍ଥକିତ ଯେ ।
ଫୁ ଫୁ ଶବଦ ମୁଖୁଁ ବାହାର
ବଜୁଳି ପରି ଚରଣ ତାର
ହୁଅନ୍ତେ ଚୁ ଚୁ କର ପିଠିରେ, ଠୁକୁଛୁ କର ଯେ ।

୩

ସୁଲ ଚଳାଇ ସୁଲୁଛୁ କେହୁ
ଜାହା ଟାଙ୍ଗଣ ଯାଉଛୁ ବହୁ,
କେ ଘୋଡ଼ୀ ଅଣ୍ଡ ଉହନ୍ତେ ଲେଞ୍ଜ, ଯୋଡ଼ ଲଗାଇ ଯେ ।
କେଉଁଠି ସୁଟେଲ ଦୁଇ ଗୋଡ଼ରେ
ସୁଆର ଖସି ପଡ଼ିବା ଡରେ,
କଣ୍ଠକୁ ଧର ଭଡ଼ି ଦୁଢ଼ରେ, ସମ୍ଭାଳି ରହୁ ସେ ।
ଜାହା ଘୋଡ଼ୀକୁ ଦେଖି ଆଗରେ ଯେ,
ମତ୍ତେ ମିଶି ଯାଆନ୍ତେ ଅତ ବେଗରେ ଯେ ।
ବାଘ ହାତକୁ ଅଲପ ମୋଡ଼ି
ଆଗେ ହିଳଖେ ଲଗାନ୍ତେ ଲେଞ୍ଜ,
ପବନ ପର ଗଲ୍ସ ସେ ଉଡ଼ି, ସେହୁ ଲାଗରେ ଦେ ।

୪

ଜାହା ହୁଙ୍କାର ଶୁଣେ ସଂସାର
ଉର୍ମି ଉଠୁଛୁ କେହୁ ବସାର
ଫର ଛଟକେ କେ ବାଜ ତାର, ପର ଗଢରେ ଯେ ।

ଜଳ ଭଉଁରୀ ପରି ବେଗ ଖର
ଫେନ ପଡ଼ଇ ଅତି ପ୍ରଖର,
ବାମ ଦକ୍ଷିଣେ କରଇ ଗତି, ଦୁଷ୍ଟ ମତିରେ ସେ ।
କେତେ ନାଉଆ ପରି ଦିଶେ ଗତିରେ ଯେ,
ତାହା ଚରଣ ଅଗ୍ର ନୋହେ କ୍ଷିତିରେ ଯେ ।
କେ ବନେ ଅସେ ଗ୍ରୀବାକୁ ମୋଡ଼ି
କେଉଁ ଯାଉଛି ନେଇ କ ଯୋଡ଼ି,
କେ ସ୍ରୋତବଶୀ ନାବ ପରାୟେ, ଚଳି ଗତିରେ ଯେ ।

୫

ଅଗଣ୍ୟ ମତ୍ତ ମାତଙ୍ଗକୁଳ
ଚଳନ୍ତି ଧୀରେ ହୋଇ ପ୍ରବଳ,
କି ସେ ପ୍ରବଳ ପର୍ବତମାଳ, ମାଳ ସଙ୍କୁଳ ଯେ,
କିବା ଧରଣୀ-ତରୁଣୀ ଗଳ
ଦୁକୂଳ ପିନ୍ଧି ଦିଶେ ମଞ୍ଜୁଳ,
କି ସେ ଆକାଶୁ ଛିଡ଼ି ପଡ଼ୁଛି, ଜଳଦଜାଳ ଯେ ।
ଏହି ସମୟେ ମଦଜଳ ବରଷେ ଯେ,
ଅବଲୋକନେ ଆସୁଛି ମାନସେ ଯେ ।
ପୁଣି କି ସିନ୍ଧୁ ମନ୍ଥିଲେ ଦେବେ
ସିନ୍ଧୁର କୂଳ ଜନମି ଭବେ
ଅସଂଖ୍ୟ ହୋଇ ଆସୁଅଛନ୍ତି, ଅତି ହରଷେ ଯେ ।

୬

କେଉଁ ହସ୍ତୀକି ମୋତି ଝାଲର
ମାଜୁଛି ତାହା ମୁଣ୍ଡେ ସିନ୍ଦୂର,
ଘଣ୍ଟି ଘାଗୁଡ଼ି ତାହାର ଖୋଲ ହସ୍ତ ବନ୍ଧନ ଯେ ।

ସୁବଳ ଶୃଙ୍ଗ ଯେଉଁ ମାତଙ୍ଗ
ରଙ୍ଗ ସାଜରେ ସଜାଡୁ ଅଙ୍ଗ,
ଘୁଞ୍ଚୁ ତାର ଗଙ୍ଗାତରଙ୍ଗ, ଯୋଝିବା ମାତ୍ର ଯେ ।
ଯେଉଁ ଗଜରାଜର ବସନ୍ତ ସଜ ଯେ,
ପଦ୍ମ ଭୂଷଣେ ଅନ୍ଧ ଚୋଖ ଭା ତେଜ ଯେ ।
ତାହାଙ୍କ ମତ୍ତ ଗଢରୁ ଭଗ
ବିଶ୍ୱର ହୋଏ ନଷ୍ଟେ ଦଳର—
କୂଳ-କମଳ ବନକୁ ଦଳି ଦେବ ଏ ଆଜ ଯେ ।

୭

ଏହି ସମୟେ ଗଣକ ଆସି
ସାଏତ ଧରି କହିଲା ଏହି—
ଷଣି ପ୍ରସ୍ଥାନ କରିବେ ଖାରବର କେଶରୀ ହେ ।
ନେପାଳ ଦେଶ ଜାତ ସୁନ୍ଦର
ଅମର କଣ୍ଠି କଳ୍ପ ହାଜର,
ତହିଁ ଆରୋହି ରାଜା ଚେମଣାବାରୁ ବାହାର ଯେ ।
ସ୍ୱର ପାଦୁକେ ପାଗା ସୁଆର ଯୋଗ ଯେ,
ନାମ ଜୀବ୍ଦା ସିପାହିମାନେ ବାହାର ଯେ ।
ଲକ୍ଷେ ଶ୍ୱେତପଦାତରେ ଡାକନ୍ତି
ଭଣ୍ଡି ନୋହେ ଏ ଯେଉଁ ସଂପତ୍ତି,
ନ ଅବା ଛୁଞ୍ଚପଞ୍ଚିଲ ସୁରଜଗର ଶ୍ରୀସା ହେ ।

୮

ବରଷା ଭାଳ ନଦୀ ପରିଭ
ବାଟେ ଅବାଟେ ଗଲେ ସେ ବହି,
ଦଣ୍ଡ କୋଣରେ ରହିଲ ନାହିଁ ତରୁ ଗୁଣ୍ଡି ଯେ ।

ଚଳନ୍ତେ ତାଙ୍କ ଚରଣ ଘାତେ
ମହୀ ସମାନ ହେଲେ ପର୍ବତେ,
ପିଇ ପିବାରେ ଶୁଖିଲେ ଭେକେ ପୋଖରୀ ନଈ ଯେ ।
ପଥରଦ୍ଧି ଉଦ୍ଧୂଳ ନାହିଁ ପଥେ ଯେ,
କାହା ଧୃତ ରହୁବ ଅବା ଏଥିରେ ଯେ ।
ଧୂମାନ୍ତ ଭଣ୍ଡ ମୂଳକ ଯାକ
ଧନ କାଞ୍ଚନ ଲୁଟି ଅନେକ
ଯାଉଁ ପଡ଼ିଲେ ଯାଠିଏ ବାଟି ବାଳ ଝଡରେ ଯେ ।



# ମନବୋଧ ଚଉତିଶା

ଭକ୍ତଚରଣ ଦାସ

—୧—

କହୁଛି ମନ ଆରେ ମୋ ବୋଲ କର,
କଳା-ଶ୍ରୀମୁଖ ବାରେ ଦେଖିବା ଗ୍ଲରେ ।
କେତେ ଧନକୁ ମନ ବାନ୍ଧିଛୁ ଆଣ୍ଠ,
କି ଘେନି ଯିବୁ ତୋର ଛୁଟିଲେ ଘଟ ରେ ।

—୨—

ଖଣ୍ଡି ସେ ଖଣ୍ଡି ତୋର ପଞ୍ଜରା କାଠି,
ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟି ରେ ।
ଖଟ ପଲଙ୍କେ ମନ ଶେଯାଇ ଶୋଉ,
ଖନ ଦୁର୍ଗନ୍ଧ ହେବ ଏ ତୋର ଦେହ ରେ ।

—୩—

ଗଲେଣି ତୋ ସଙ୍ଗରୁ ଯେତେକ ଜନ,
ଗଣ୍ଠି ରେ ବାନ୍ଧିନେଲେ କେ କେତେ ଧନରେ ।
ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ,
ଗାଢ଼େ ମଣ୍ଡିଣ ଦୈତ୍ୟ ଧନ ଅର୍ଜିଲୁ ରେ ।

—୪—

ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ,
ଘଟ ଛୁଟିଲେ ତୋତେ ବୋଲିବେ ଭୂତରେ ।
ଘର ଘରଣୀ ଦେହ କଳାଇ ଥିବେ,
ଘେନି ବନ୍ଧୁ କୁଟୁମ୍ବ ଶୁଦ୍ଧ ହୋଇବେ ରେ ।

—୫—

ଝଙ୍କାର କହୁଛୁ ଯେବେ ଭବ ସାଗରୁ,
ଝପାସ୍ତ କର ଭଜ ଏବେ ଶ୍ରୀଗୁରୁରେ ।
ଞଣା ହେଉଛୁ ଦନୁ ଦନୁ ଆୟୁଷ,
ଆଜ ଏଣିକି ଅଛୁ କେତେ ବୟସ ରେ ।

—୬—

ଟଣ ପ୍ରତିମା ପ୍ରାୟେ ଦିଶୁ ସୁନ୍ଦର,
ଠର ଭିତରେ ଦେଖ କି ନାରଖାରରେ ।
ଚର୍ମ ବେଢ଼ିଛି ସିନା ଚଉରଙ୍ଗିଣିକ,
ଚଲ ରୁ ଦଅ ମାଲଗିରିବାସୀଙ୍କି ରେ ।

—୭—

ଘୃଣ ଦେହକୁ ମନ କରନ୍ତୁ ସଜ,
ଛନ୍ଦ କପଟ ତେଜି ଗୋବିନ୍ଦ ଭଜରେ ।
ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା,
ଛ'ଖଣ୍ଡି କାଠ ହେବ ତୋ ପାଇଁ ଲୋଡ଼ା ରେ ।

—୮—

ଯମ ଯେ ନ ଜାଣଇ ବାଳୁତ ଯୁବା,
ଜାଉଁକୁ ବୋଲି ମନେ କରନ୍ତୁ ଅବାରେ
ଜଣେ ହେଁ ଏଥୁ କେହୁ ନାହିଁ ଅମର,
ଜଗନ୍ନାଥଙ୍କୁ ଭଜ ହେବୁ ଝଙ୍କାର ରେ ।

—୯—

ଖୋଲ ଗନ୍ଧା ପାସ୍ତେଡ଼ା ପିନ୍ଧାକୁ ବସ୍ତ୍ର,
ଖାଉ ସଂସାରେ ମନ ନ ବୁଡ଼ି ପଶୁରେ ।
ଖୁଣ୍ଟି ପଡ଼ିଲେ ଉଠି ପାରିବୁ ନାହିଁ,
ଖଣ୍ଡିଳ ପଦବୃକ୍ଷେ ଲଗିଛୁ କାହିଁ ରେ ।

—୧୦—

ଞଣି ଉଧସେ ଅୟୁ ନୋହୁ ନା ମନ,
ଞନ୍ଦ୍ରାରେ ଦେଖୁ ଅଛୁ ଯଥା ସପନରେ ।
ଞ ଯିବେ ସଙ୍ଗେ କେହ୍ନ ଯିବୁ ତୁ ଏକା,
ଞାମ-ସ୍ୱାଦ ଅଟଇ ପଥକୁ ସଖା ରେ ।

—୧୧—

ଟାଣ କରନ୍ତୁ ମନ ସବୁ ମୋହରି,
ଟଳି ପଡ଼ିଲେ କେହ୍ନ ନୋହେ ଭାହାରରେ ।
ଟେକି ଭିତରେ ଯେସନ୍ତେ ଅପୂର୍ବ ନାସ୍ତି,
ଟୋପ ତଳସି ଅଛୁ ତୋ ଦେହେଁ ପୂରି ରେ ।

—୧୨—

ଠିକେ ମୁଁ କହୁଅଛୁ କର ମୋ କଥା,
ଠିକେ ତୋ' ଦେହେଁ ଅଛୁ ଶୂନ୍ୟ ଦେବତାରେ ।
ଠକ ଯିବୁଟି ଠିକ ମୁଣ୍ଡ ପଡ଼ିଲେ,
ଠିକେଣ ଗୁବ୍ଦ ହେବା କର ତୁ ଭଲେ ରେ ।

—୧୩—

ଡାକ କହୁଛୁ ମନ ଡାକ ଗୋବିନ୍ଦ,
ଡର କଙ୍କାଳ ଯାଉ ତୋହର ହୃଦରେ ।
ଡେରିଆନ୍ତୁ ଶ୍ରବଣ ଭକ୍ତ-ଡାକକୁ,
ଡଙ୍ଗା ଯେସନ୍ତେ ଜଳରେ ବୁହାଁ ପଛକୁ ରେ ।

—୧୪—

ଢୋଲ ହେସନେ ଢାଉଁ ଢାଉଁ ବାଜଇ,
ଢାଳେ ତଣ୍ଟି ଭିତରେ କହୁ ଟି ବାନ୍ଧିରେ ।
ଢାଙ୍କି ବନ୍ଧନ ଦେହ ସବୁଟି ଭଳି,
ଢଳି ପଡ଼ିଲେ ସବୁ ହେବଟି ମିଛ ରେ ।

— ୧୫ —

ଏବେଣ ତୁ ଦେଇଥିଲେ ତେବେଣ ପାଇବୁ,
ଅଣଥାସ୍ତୁଲ୍ଭ ବେଳେ କ ଯେନ ପିବୁଟେ ।
ଅଣନଶ୍ବାଶୀ ହୋଇ ଘନ୍ଦୁବୁ ଦନେ,
ଅନେକ ଦୁଃଖ ଦେବେ ଯମଭୁବନ ରେ ।

— ୧୬ —

ତୁ ଯେ ବୋଲୁ ମୋହର ଅର୍ଜିଲ୍ଲ ଧନ,
ତୋ ଦେହ ନୋହେ ତୋର ଦେଖ ଏ ମାନରେ ।
ତୋହର ସଙ୍ଗୁ ମନ ଗଲେଣି ଭେଟେ,
ତୁ ମିଥ୍ୟା କଥାକୁ ତ ଯାଉ ପରତେ ରେ ।

— ୧୭ —

ଝଲେ ଏହୁ ସଂସାରେ ଯେତେ ନୃପନ୍ଥ,
ଅସ୍ତ କଲ କେ ଖେଦ ଭଲ ଏ ପୃଥ୍ୱୀରେ ।
ଥୋଇଲ ଧନ ନୋଜ ଖଣ୍ଡ ଖାଇବେ,
ଥାନେ ତୋହର ଘର ଭଣ ରହିବେ ରେ ।

— ୧୮ —

ଦେହେ ପୂରଛୁ ତୋର ଅଶେଷ ରୋଗ,
ଝନାଗୃଣକେ ପିଡ଼ା ଏ ସୁଖ ଭୋଟରେ ।
ଦଣ୍ଡେ ହେ ଭେଦୁ ତୋତେ ରଖିବ ନାହିଁ,
ଦଣ୍ଡୁ ନେ ଥିବେ ଯମଡ଼ୁଗରେ ନେଇ ରେ ।

— ୧୯ —

ଧର୍ମ ଅଧର୍ମ କଥା ନ ଜାଣୁ ତୁହ,
ଧନ୍ଦ ହେଉଛୁ ଧନ ଅର୍ଜିବା ପାଇଁରେ ।
ଧୋକା ରଖିଲେ ଧନ୍ଦା ଫିଟିବ ନାହିଁ,
ଧର୍ମରେ ଅନୁଯାତ ହେଉଛୁ ମଣ୍ଟ ରେ ।

— ୨୦ —

ନଷ୍ଟ କର୍ମ କଲେ ନଷ୍ଟ ପାଇବୁ,
ନରକେ ପଡ଼ି କେତେ ଦୁଃଖ ସହିବୁରେ ।
ନିମିଷେ ମାତ୍ର ମୁଖେ ନ ବୋଲୁ ହରି,
ନାଶ ହେବୁ ତୁ କଷ୍ଟ ଅଛୁ ଆବୋରି ରେ ।

— ୨୧ —

ପାଷଣ୍ଡ ନାଶି ଯେସନ୍ତେ ରବି ଉଦୟ,
ପଦ୍ମ-ଲୋଚନ ସବୁ ଦେଖେ ହୃଦୟରେ ।
ପ୍ରଭୁଙ୍କ ଅଗ୍ରେ ଭବ ତରିବୁ ଯେବେ,
ପଦ୍ମ ପାଦରେ ଚିତ୍ତ ଦିଅ ତୁ ଏବେ ରେ ।

— ୨୨ —

ଫୁଲ ଯେସନେ ଫୁଲେ ଫୁଲେ ବନ୍ଧରେ,
ଫୁଲ ସରିଲେ ଆଉ ନ ଦିଶେ ଡାଳେରେ ରେ ।
ଫଳ ସଂସାରେ ଲଭ ହରି-ଭଜନ,
ଫାଶ ଗଳାନ୍ତୁ କଷ୍ଟ କଳନ୍ତୁ ଧନ ରେ ।

— ୨୩ —

ବେଳକୁ ବେଳ ତୋତେ କହୁଛୁ ମୂର୍ଖ,
ବାନ୍ଧଣ ନେବ ଯମ କି ଦୁଃଖ ଦେଇବେ ।
ବିକଳେ କାନ୍ଦୁଥିବୁ ଆକୁଳ ହୋଇ,
ବେଳ ତୁ ଅଗ୍ରେ କର ଭଜ ଗୋସାଇଁ ରେ ।

—୧୪—

ଭେଳା ଗୁଞ୍ଜନ ହେଲା ·ଭଟଳି ବନ୍ଧୁଛୁ,
ଭଙ୍ଗା ନାବରେ କେବା ଯିବୁ ତରିଛୁରେ ।
ସ୍ୱବସ୍ତୁ ନକଟ ଯେ ଅଳ୍ପରେ ଦୂର,
ଭକତ ଦାସ ଭଜେ ଜୀବନ ସ୍ଥିର ରେ ।

—୧୫—

ମିଥ୍ୟା-ମାୟା ସଂସାର ନୋହେ ଆପଣ,
ମନ ବୋଲୁଣ ଯବେ ପଣ୍ଡିତ ହୁଣ ରେ ।
ମସ୍ତ୍ର ଭିତରେ ଜେନ୍ଦ୍ର ଦେଖିବ ନାହିଁ,
ମନ ବୋଲ ଜାଣନ୍ତୁ, ମଣରୁ ବୁଝ ରେ ।

—୧୬—

ଜନମ ହେଲେ ପ୍ରାଣୀ ଅବଶ୍ୟ ମରି,
ଯଶ ରଖିବୁ ଯେବେ ଭଜ ଶ୍ରୀହରିରେ ।
ଯମ ବାନ୍ଧି ନେବଟି ହେବୁ ମେଲାଣି,
ଜଗନ୍ନାଥ ମହିମା ଏତିକ ଆଣି ରେ ।

—୧୭—

ରଙ୍ଗପସରା ଯିନା ଭବ-ସାଗର,
ରଙ୍ଗ-ଭିତରେ ଅଛୁ କ ନାଭସାର ରେ ।
ରୂପ-ପ୍ରତିମାକୁ ତ ପରତେ ନ ଯା,
ରହିବେ ନାହିଁ କେହି ରଜା ପରଜା ରେ ।

—୧୮—

ନେତନେ ଦେଖି ଭଣ୍ଡେ ଶୁଣିଲୁ କଥା,
ଲୋଭ କରି ଅର୍ଜିଲୁ ଧନ ସମ୍ପତ୍ତି ରେ ।
ଲୋଭଟି ସବୁ ନାଶ କରଇ ମନ,
ଲୋଡିଲେ ନ ପାଇବୁ ଆଉ ଜୀବନ ରେ ।

—୨୯—

ବ ଅର୍ଥେ ବନ୍ଧୁଅଛୁ ଦୁର୍ଲଭ ଦେହ,
ବିଷୟା ବଶେ ଆଉ ନ ବଳା ସ୍ନେହ ରେ ।
ବୁଡ଼ି ଯିବୁଟି ମୂଳ ଲାଭ ସହିତ,
ବେଳଥୁଁ ଆଗ୍ରେ କର ଭଜ ମାଧବ ରେ ।

—୩୦—

ଶ୍ରୀକୃଷ୍ଣ-ପାଦ ପଦ୍ମେ ଦିଅ ତୁ ମନ,
ଗଲେ ନ ପାଇବୁ ଆଉ ଜୀବନ ରେ ।
ଶ୍ରୀକୃଷ୍ଣ-ନାମ ଗୋଟି କର ଭଜନ,
ଶ୍ରୀକୃଷ୍ଣ-ପଦ୍ମ ପାଦେ କର ତୁ ଧ୍ୟାନ ରେ ।

—୩୧—

ସନ୍ତୋଷ ଚିତ୍ତେ ତୁହି ହରିଙ୍କି ଭଜ,
ଫସାରେ ପଡ଼ି ଆଉ ନ ପାଅ ଲାଜ ରେ ।
ସବୁଟି ମିଛ ହରି ନାମଟି ସତ,
ଶ୍ରୀକୃଷ୍ଣ-ପାଦ ପଦ୍ମେ ଦିଅ ତୁ ଚିତ୍ତ ରେ ।

—୩୨—

ସତ୍ୟ ମଣ୍ଡଳୁ ବୁଡ଼ି ଭବ-ସାଗର,
ପର ଯାଉଛୁ ପରମାତ୍ମୁ ଛୋଡ଼ିବ ରେ ।
ସନ୍ତୋଷ ହୋଇ ଦୃଢ଼େ ଭଜ ଶ୍ରୀହରି,
ଶୋକ ସାଗରୁ ଯେବେ ହୋଇବୁ ପାରରେ ।

—୩୩—

ଛୁଡ଼ିଲେ ଯେତେକ ଜନ ସ୍ୱଜନାମଙ୍କୁ,
ସ୍ନାନ-ଘଟଣ ଗଲେ ବୃକ୍ଷ ତଳକୁ ରେ !
ଛୁଟିଲେ ଦେହ ଆଉ ପାଇବୁ ନାହିଁ,
ଯାଏଁ ନସାର ଥିବେ ଚେତା ଦେହ ପାଇଁ ରେ !

—୩୪—

ଏହ ଦୁର୍ଲଭ ଦେହ ହୋଏ ଅନୂପ,
ଏହ ନ ସିବ ନାମ ହୃଦରେ ଘୋଷ ରେ
ସ୍ଥିର ଦେହକୁ ମନ ନ ଯା ବିଶ୍ବାସ,
ସ୍ଥିର ବୁଦ୍ଧି କି ଜନ୍ମେ ଜଗତ ତାସ ରେ !

—

# ଦେଖିଲେ ଦେଖିଲା ପରି

ଗୋପାଳକୃଷ୍ଣ ପଟ୍ଟନାୟକ

ରାଗ—କେଦାରା, ଝିମ୍ପା ତାଳ

( ଢାଳେ ତ ଢାଳନ୍ତୁ ନାହିଁ କୃପାସୁଧା ଝଣ୍ଟକ—ବୃତ୍ତ )

ଦେଖିଲେ ଦେଖିଲାପରି ଅରେ ରସିକସ୍ୱଜନଙ୍କୁ
ଅଖିଳ ବ୍ରଜବାସୀଙ୍କ ଅଶେଷ ପୁଣ୍ୟପୁଞ୍ଜକୁ । ପଦ ।

ସୁରଭୀଗଣ ପଛରେ ମୁରଲୀ ବଜାଇ ଧୀରେ
ନାଚି ଆସିବା ବେଳରେ ବନ ବାହୁଡ଼ା ସଜକୁ ।୧।

ବିନ୍ଦୁ ବିନ୍ଦୁ ଶ୍ରମ ଝାଳ ଅଳକାବୃତ କପୋଳ
ମକରକୁଣ୍ଡଳ ଗଣ୍ଡଶିଖଣ୍ଡ ଚୂଳ ଧ୍ୱଜକୁ । ୨ ।

ନଟବର ଶିଖାମଣି ଚରମ ଦେଶର ବେଣୀ
ସ୍ଖଳିବାର ବଂଶୀରନ୍ଧ୍ରେ ଗୁରୁ ଝଙ୍କୃତି ବ୍ରଜକୁ । ୩ ।

ନାସିକାର ମୋଢବାର ଧୀର ଧୀର ଚଳିବାର
ଗୁଞ୍ଜାହାର ଗୁଳେ ଉର- ଅଭମ ବନ୍ୟ ସ୍ରଜକୁ । ୪ ।

ଝୁମୁଝୁମୁ ବାଜିବାର ମଞ୍ଜୁଳ ମଣି ମଞ୍ଜୀର
ଗୋପାଳକୃଷ୍ଣ ଚକ୍ଷେ ସେ ଛନ୍ଦାଚରଣ ଭଞ୍ଜକୁ । ୫ ।

---

( ଗୋପାଳକୃଷ୍ଣ ପଦ୍ୟାବଳୀ )

କ: ଚ: ୧—୫

# ଜଗନ୍ନାଥ-ଜଣାଣ

## କବିସୂର୍ଯ୍ୟ ବଳଦେବ ରଥ

କ୍ଷୀରମସ୍ତୁ ସିନ୍ଧୁ-ଜେମାଙ୍କର ବନ୍ଧୁ, ତୁମ୍ଭେ ତ ଜଗତପତି।
ଟେକ ସମ-ଦୃଷ୍ଟି ପତାକାକୁ ପୁଣି ଏ କି ପକ୍ଷପାତ ରୀତି
ହେ ମହାପ୍ରଭୁ !
ସେ କି ଭଲ ମୁଁ ନ ଭଲି ।
ସେ କି ଦେଲା ଅବା ମୁଁ ଅବା ନ ଦେବା ଯେଣୁ ଏତେ ସବୁ ହେଲା
ହେ ମହାପ୍ରଭୁ । ୧ ।

ମୁଗଲୁବନ୍ଦୀଙ୍କ ରଖିଲ ଯେ କାଳି ମୁଗଲୁ ବଦ୍ଧେଶ ତାଙ୍କୁ ।
ଚରଣ ପଙ୍କଜ ସ୍ମରଣ ବିନା ସେ କାଳ କରିଥିଲା ଆଉ
ହେ ମହାପ୍ରଭୁ !
କୁମ୍ଭୀର ଗ୍ରାସରେ ଗାଜ ।
କେନେ କହିବାରେ ଅନେକ ପ-ଭକ୍ତ ମନେ ଭଲ ସିନା ମାନ
ହେ ମହାପ୍ରଭୁ । ୨ ।

ନୃପ ସଭା ମଧ୍ୟେ ଅସ୍ଥିର ହୁଅନ୍ତେ ଦ୍ରୁପଦ ସୁତା ଆଦର ।
ଧ୍ୟାନକୁ ତ ଆନ କିଛୁ କରିବାରୁ କାନ ଶୁଣି ନାହିଁ ମୋର
ହେ ମହାପ୍ରଭୁ !
ଦ୍ୱୈତେ ଯେ ଥାଅ ନିକଟେ ।
ଲାଞ୍ଚ ଦେଇଥିଲେ କାଞ୍ଚନ କେତେ କି ଥାଅ ପକ୍ଷୀରାଜ ପୁତେ
ହେ ମହାପ୍ରଭୁ । ୩ ।

ରୂପରେ କେଳଠ ଉପରେ ପତାକା ଉଆଇଲ ଯେ ବୁଝାଇ ।
ଖାହା ହୋଇଥିଲା, ଯାହା ଦେଲ ତୁମ୍ଭ ପ୍ରସାଦ ବଣ୍ଟ ରଜା

ହେ ମହାପ୍ରଭୁ !

ଜଗତେ ତ ତାହା ଜଣା

ଅନନ୍ତ ନେଇ ମିଳିବାର ହୋଇଛ ଯଶ ଉଣ୍ଡିମ ବାଜଣା

ହେ ମହାପ୍ରଭୁ । ୪ ।

ନଳ କୁବେରଙ୍କ ଚରିତକୁ ବୁଝେ ବଳକୁ ଅଛନ୍ତି ଏବେ
ପ୍ରହ୍ଲାଦଙ୍କ ମହା ଆହ୍ଲାଦ ଆପଣ କରିଛ ପରା ପୂର୍ବେ

ହେ ମହାପ୍ରଭୁ !

ମୁନଙ୍କ ଆଶ୍ରମ ଶିଳା

ତୁମ୍ଭଙ୍କ କି ଉପକାର କରି ରୂପବତୀ ହୋଇ ବଳସିଲା

ହେ ମହାପ୍ରଭୁ । ୫ ।

କେବଳ ସୁଦାମା ଦ୍ୱିଜ ଭଜ ଶକ୍ତି ଅନୁରୂପ ଆଚରିଲେ ।
ଗଲଡା ଏ ଖୁଦ ନଜର ଦେବାରୁ ଫଳ ତାଦୃଶ ଲଭିଲେ

ହେ ମହାପ୍ରଭୁ !

ଆଉ କେ କ କଲା କହ ।

ତାହା କାମକୁ ମ୍ଭ ପୂଭି ନାହିଁ ତୁମ୍ଭ ଅହେତୁକ ଅନୁଗ୍ରହ

ହେ ମହାପ୍ରଭୁ । ୬ ।

ଅନନ୍ତଗତ ତୋ ମନ ନୋହେ ବୋଲି ଆଜ୍ଞା ହେବ ଅବା ମୋତେ ।
ନାମ ସୁ ସୁତର ଡାକବାରୁ ଦିବ୍ୟଧାମ ଲଭିଲେ କେମନ୍ତେ

ହେ ମହାପ୍ରଭୁ !

ଅଜାମିଳ ମହାସୁର ।

କେଉଁ ସାବଧାନ ହୋଇ ନାମ ଗାନ କରିଥିଲେ ସେ ତୁମ୍ଭର

ହେ ମହାପ୍ରଭୁ । ୭ ।

ଜବ ଭବ ସିନ୍ଧୁରୁ ଯୋଡ଼ି କରଯୁଗକୁ ଯୁଗ୍ମରେ କହେ ।
ଭଲ ଅବା ମନ୍ଦ କରିବାକୁ ତ ମୁଁ ମୋହର ଆୟତ୍ତ ନୁହେଁ
ହେ ମହାପ୍ରଭୁ !
ସବୁ ତୁମ୍ଭ ଇଚ୍ଛା ଦିନା ।
ଭଙ୍ଗିବା ନ ରଖ ମୋହର ଗତି ତ ପତିତପାବନ ବାନା
ହେ ମହାପ୍ରଭୁ । ୮ ।

# ଦରବାର

## ରାଧାନାଥ ରାୟ

ଉତ୍କଳର ପୂର୍ବ କୀର୍ତ୍ତି-ସ୍ମୃତି-ପୂତ,
ବାରବାଟୀ ଆଜ ସାଜେ ସଜ୍ଜୀଭୂତ

ଐତିହାସିକ ଏ ଦୁର୍ଗ ବାରବାଟୀ,
ବୀର ରକ୍ତପିଣ୍ଡେ ଗଢ଼ା ଯାର ମାଟି ।

ବାରବାଟୀ ଯହିଁ ମନଃସ୍ମୃତି-ପୋତେ,
ବାହିଯାଏ ପ୍ରତି ଲେମେ କାଳସ୍ରୋତେ ।

କାଳେ କାଳେ କେତେ ଦେଖି ଯେ ଅସିଲା,
ନଶ୍ୱର ନରର ଗରିମାର ଲୀଳା ।

ପୁଣି ନୂଆ ଲୀଳା ଲାଗିଛି ଏଠାରେ,
ପୁଣି ମତ୍ତ ନରେ ନଶ୍ୱର ବ୍ୟାପାରେ ।

ପୁଣି ଦେଖ ଆଜ ଗରିମାର ଘଟା,
ଲୁପ୍ତ-ଦର୍ପ କାଳ କରେ ଯାକୁ ଅଟ୍ଟା ।

ଦେଖିବାକୁ ଏହି ରାଜସ ଉତ୍ସବ,
ରୁଣ୍ଡ ଦୁର୍ଗାଙ୍ଗନେ ଅସଂଖ୍ୟ ମାନବ ।

କାଳୀ-ଅଭ୍ୟାସେ ଯେ ଦୁର୍ଗ-ପ୍ରାଚୀର,
ବାଦ୍ୟ ନାଦେ ଦେଉଥିଲ ପ୍ରତିଗିର ।

ଜରଜୀର୍ଣ୍ଣ ବେଶେ ଦେଖଇ ସେ ଆଜ,
ନବ୍ୟ-ଉତ୍କଳର ଏ ସଭ୍ୟ ସମାଜ ।

ପୂର୍ବ ନରପତି-ପ୍ରେତ-ଆତ୍ମାମାନ,
ବ୍ୟୋମେ ବ୍ୟୋମଯାନେ ହୋଇ ଅଧିଷ୍ଠାନ ।

ଦେଖନ୍ତି ସଖେଦେ ତାଙ୍କର ଦୁର୍ଜୟ,
ଉତ୍କଳର ଏହି ଦଶା ବିପର୍ଯ୍ୟୟ ।

ଏହି ଶିଳାବନ୍ଧ ଯାଙ୍କର କୀରତି,
ପୁଣ୍ୟଶ୍ଳୋକ ମରକତ ମଣ୍ଡପତି ।

ଦେଖୁନାହାନ୍ତି କି ମନେ ବହି ଲାଜ,
କି ଥିଲା ଏ ରାଜ୍ୟ, କି ହୋଇଛି ଆଜ !

ଇନ୍ଦ୍ରନୀଳ-ଶିର ତୋଳି ନଭସ୍ଥଳେ,
ଏ ଦୃଶ୍ୟ ଦେଖନ୍ତି ଶାଶ୍ୱତ ଅଚଳେ ।

ମଞ୍ଚରମା-କାଞ୍ଚୀନେମା-ସ୍ନାନେ ପୂତା,
କାଞ୍ଚୀ-ନେମା-ବେଣୀ-ପ୍ରଭ-ବେଣୀଯୁତା ।

ଦୃଷଦ୍‌ବଦ୍ଧାରୂପେ ନର୍ଝର ମୁଖର,
ସୈକତମଳରୂପେ ନୀଳାମ୍ବରମ୍ବର ।

ଠାବେ ଠାବେ ଦ୍ୱୀପ-ଶୈଳ-ପାପଦଣ୍ଡୀ,
ଯୁକ୍ତେ ବକ୍ଷ ଯାର ହୋଇଅଛି ମଣ୍ଡି ।

ପ୍ରବାହ-ବିହାର-ଅରଣ୍ୟ-ଦନ୍ତୀର,
ସବେ ଚନ୍ଦ୍ରକତ ଯା'ର ନୀଳ ନୀର ।

ଅଙ୍କେ ସେହି ନଦୀ ବହୁଅଛି ରଙ୍ଗେ,
ଏ ରଙ୍ଗ ନିରେଖି ତରଙ୍ଗ ଭ୍ରୂଭଙ୍ଗେ ।

ଏକ ପରେ ଏକ ରାଜା, ମହାରାଜା,
ଅସନ୍ତି ବଜାଇ ନାନାରଙ୍ଗେ ବାଜା ।

ଉଡ଼ାଇ ପତାକା, ଝଟକାଇ ହାସ,
ଯାଏକ-କୁହାଟେ ମନେ ଲଟେ ହାସ ।

ଅସ୍କନ୍ଦେ ଆସନ୍ତି ଅଶ୍ୱ ମାଳ ମାଳ,
ଚଣ୍ଡ ମୁଣ୍ଡ କେତେ ଆସନ୍ତି ଶୃଗାଳ ।
ଯାନ ବାହନରେ ଲାଗିଅଛି ଧୂମ୍,
ପଡ଼ୁଅଛି ତୋପ ଗୁଡ଼୍ମ ଗୁଡ଼୍ମ ।
ଚନ୍ଦ୍ରାତପ ତଳେ ବିରାଜଇ ମଞ୍ଚ,
ମହାର୍ହ ବସନ—ଭୂଷଣେ ସୁସଜ୍ଜ ।
ସ୍ତମ୍ଭାବଳୀ ପଦେ ହୋଇଛି ମଣ୍ଡନ,
ଅଙ୍କେ ଧାଡ଼ି ଧାଡ଼ି ରାଜେ ବେତ୍ରାସନ ।
ନୀରବ ଗରବେ ପ୍ରହରୀ ମାଳିକା,
ଦେଖାନ୍ତି ସ୍ୱପ୍ନର-ଅସ୍ତ୍ର-ବିଭୀଷିକା ।
ଉପାଧି-ଜଡ଼ିତେ ଉପାଧି-ଜଡ଼ିତ;
ଉପାଧିରେ ଆଜ କରିବେ ଜଡ଼ିତ ।
ପଢ଼ିଏ ଦେବେ କର୍ଣ୍ଣ-ରସାୟନ,
ପଦ ଅନୁରୂପେ ବସନ, ଭୂଷଣ ।
ଜଙ୍ଗ-ଭକ୍ଷ୍ୟ କ୍ଷୟଶୀଳ-ତଲବାର,
ପୋଷାକ ବୁଟିଆ ମୂଷାର ଆହାର ।
ମୋହମାଳ ଅସ୍ଥି-ବିକାର କେବଳ,
ଜଳକା ନୟନେ ଦଣ୍ଡେ ଯା ଉଜ୍ଜ୍ୱଳ ।
ଖିର-ପେଞ୍ଚ ଯାହା କଚ୍ଛୁଦନ ଅନ୍ତ୍ରେ,
ତରଳେ ଜରକା ପ୍ରାସ୍ୱେ କାଳଦନ୍ତେ ।
ପଦାର୍ଥ-ସମ୍ପର୍କ-ଶୂନ୍ୟ ନୂଆ ପଦ,
ସଙ୍ଗେ ମିଳିବ ଏ ନୂଆ ପରିଚ୍ଛଦ ।
ଏହୁ ଗ୍ଲୁର ଏହୁ ଅକଳ୍ପିତ କର,
ସମ୍ମାନ ସକାଶେ ଏତେ ବ୍ୟସ୍ତ ନର ।



# ରାଜଧର୍ମ

ଗଙ୍ଗାଧର ମେହେର

ରାଗ—ବଙ୍ଗଳାଶ୍ରୀ

× × ×

ପ୍ରକୃତର ଶାନ୍ତି- ଯଙ୍କରେ ନୃପତ
ମୂର୍ତ୍ତି ସ୍ୱଭାବେ ବଳି,
ଦୃଢ଼ ଧର୍ମ-ଦାମେ ବଦ୍ଧ ନଜ କାମେ
ପାଦେ ନ ପାରଇ ଚଳି ।
ଅଭିଷେକ ଯାହା କରଥାନ୍ତ ତାହା
ପ୍ରୋକ୍ଷଣ ମାତର ବିନା,
ସ୍ୱମର ଢାଳବା ଅନ୍ୟ କି ବୋଲବା
ମକ୍ଷିକା ତଡ଼ିବା ବିନା ?
ସ୍ୱର୍ଗେ ନଇଶ୍ୱର୍ଯ୍ୟ ନ ଥିବ ଅବଶ୍ୟ
ଦେବତା ହୃଦୟେ ସୁଦ୍ଧା,
ସେ ହେତୁ ମହତ୍ତା ଦେବତା ନୃପତ
ସେବଇ ଷାରତ-ସୁଧା ।
ପ୍ରଜାରକ୍ତ ଜଳ- କଣିକା ପଟଳ
ବିନା ଛତ୍ରାସନ ପାଇ,
ଜଳଧର ରୂପ ହୋଇଥାଏ ନୃପ
ପରଜାଙ୍କ ହିତ ପାଇଁ ।
ଭୂମିଜଳେ ବଜ୍ର ନ ଥାଏ, ସହଜ
ମାତ୍ର ତାହା ଜଳଧରେ;
ପ୍ରଜା-କର-ଦଣ୍ଡ ନ ହୁଏ ପ୍ରଚଣ୍ଡ,
ପ୍ରଚଣ୍ଡ ନୃପତି କରେ ।

ହୁଦ ପଛେ ଜ୍ୱଳେ ବିଦ୍ୟୁତ-ଅନଳେ
ଜଳଦାନେ ଘନ ବାଧି,
ସୁଖ ତେଜି ରାଜା ତୋଷି ପରଜା,
ତେବେ ତ ପରମାରାଧି ।
ସ୍ୱର୍ଗନଶ୍ରେଣୀର ସମୁନ୍ନତ ଶିର
ରାଜପଦ ଭୂମଣ୍ଡଳେ,
ହେଲେ ଲକ୍ଷ୍ୟ-ଭ୍ରଷ୍ଟ, ପଡ଼ି ହୁଏ ନଷ୍ଟ
ନୃପଣ୍ଡ ଗଣ୍ଡୀର ତଳେ ।
ମାୟାକାର ପରି ଦଣ୍ଡ ଗୋଟି ଧରି
ସମଦୃଷ୍ଟି ସମଭାବେ,
ରାଜତ୍ୱ-ରଜ୍ଜୁରେ ବାଳସି ରଜ୍ଜୁରେ (୧)
ନିଜ ଜୀବନ ନଗ୍ନବେ ।
ଯଦି ବାଜିକର ରଜ୍ଜୁରେ ପଥିର
ହେଲାରୁ ନ ଥିବ ସ୍ଥଳ,
ତାଳି ମାରି ଥୋକେ ହସି ଦେବେ ଲୋକେ
ବାଦ୍ୟକାର ଦେବ ଗାଳି ।
ସ୍ତ୍ରିୟା ମଇଥିଲୀ- ଚରଣେ ଶିଖିଲୀ-
ଭୂତ କଲ ପ୍ରାଣ ଯେବେ,
ନ କରିବ କାର୍ଯ୍ୟ ମାନବ-ସମାଜ
ଅନ୍ତର ଗଣ୍ଡିବେ ତେବେ ।
ବୋଲିବ ସଂସାର, ରାମ କୁଳାଙ୍ଗାର
ଜନ୍ମ ଲଭି ରଘୁବଂଶେ
ବସ୍ତ୍ର-କୃପଣ ହୋଇ ରାଜପଣ
ତ୍ୟାଗ କଲି ବଧୂବଶେ ।

---

(୧) ରଜ୍ଜୁ—ସବଳ

ବାନପ୍ରସ୍ଥାଶ୍ରମ ହେଲେ ହେଁ ଉତ୍ତମ
ସମସ୍ତ ମୋ ହୋଇନାହିଁ,
ମୋ କାର୍ଯ୍ୟେ ଭରତ ହେବାକୁ ନିରତ
ସମ୍ମତ ବା ହେବ କାହିଁ !
ଅଙ୍କ ତ୍ରୁଟିବା ପ୍ରୀତ ହ୍ରାସ କଥ ଖଥ
ଦେଖି ଦେଖି ପୁନଃ ପୁନଃ
ହେଲେ ଶୂନ୍ୟ ଅଙ୍କ ଶୂନ୍ୟ ଯୋଗେ ଅଙ୍କ
ପଞ୍ଚ ହୃଦ ପ୍ରୀତ ଗୁଣ ।
ସ୍ଥୂଳ କଳେବର ନୁହଇ ଅମର
ଅମର କେବଳ ମନ,
ମନେ ଯେବେ ସଙ୍ଗ ହୋଇନାହିଁ ଭଙ୍ଗ
ସେହି ସୁଖ ସୁଖେ ଗଣ୍ୟ ।
କେ ରହିଛି ଭବେ ବାନ୍ଧବ ବିଭବେ
ସୁବର୍ଣ୍ଣ-ମୁକୁଟ ବାନ୍ଧି ?
ଯଶ ଅପଯଶ ନୋହି କାଳବଶ
ହୁଅନ୍ତି ତା ପ୍ରତିବାଦୀ ।
ସ୍ୱରଗ-ନରକ- ଗତି-ନିର୍ଦ୍ଧାରକ
ସ୍ୱଷ୍ଟେ ଜଗତ-ଜନ,
ଏଡ଼ି ଜନରବ ଅନନ୍ତ୍ୟ ବାନ୍ଧବ
ସୁଜ୍ଞ ଲୋକେ ନୀଚମନ ।
ନାହିଁ ସିନା ଘରେ, ହୃଦ-ପ୍ରେମ-ସରେ
ମୋ ପ୍ରିୟା-କମଳ-କଳି
ପଡ଼ିଅଛି ଫୁଟି ମକରନ୍ଦ ଲୁଟି
କରୁଅଛି ମନ-ଅଳି ।

—※—

( ତପସ୍ୱିନୀ )

# ବାଟୋଇ ଓ ନାଉରିଆ

## ନନ୍ଦକିଶୋର ବଳ

ମେଘ ବରଷଇ ବିଜୁଳି ମାରଇ
ପବନ ବହଇ ଖର,
ବାଟ ଭୁଲି ଭୁଲି ପଡ଼ିଛି ମୁଁ ଏକା
ଦୂର ଦେଶ ମୋର ଘର ।

ଘୋର ଗରଜନେ ଘନ ଚମକଇ
ମେଘ ତ କଳାହାଣ୍ଡିଆ,
ଅନେକ ଦୂରର ବିଦେଶୀ ବାଟୋଇ
ନାବ ଆଣ ନାଉରିଆ ।

କୂଳ କୂଳ ଖାଇ ଉଛୁଳଇ ନଈ
ଖରେ ବହୁଅଛି ବାଆ,
ମେଘ ଗରଜଇ ବିଜୁଳି ମାରଇ
କେମନ୍ତେ ମୁଁ ନେବି ନାଆ ?

ଭଉଁର ଖେଳାଇ ଫେଣ ଚଳକାଇ
ଘୋର ଗରଜଇ ନଈ,
ଅକାତ ପାଣିରେ ଆହୁଲା ନ ମାନେ
କେମନ୍ତେ ନାବ ନେବଇ ।

ଗନ୍ଧ ଗନ୍ଧ ପାଟ ଏପାଖ ଜାଲରେ
ଝିର ଝିର ବହେ ବାଆ,
ନାହିଁ ଜନ ପ୍ରାଣୀ କାହ କୋଇଲରେ
ନାହିଁ କରେ ତୋର ମାୟା ?

ଠକ ଠକ ପଡ଼େ ସରଗ ପଥର
ସାଙ୍ଗେ ସାଥୀ କେହୁ ନାହିଁ,
ବନ୍ଧୁ ଦୟାଳ ବାହୁ ଅଣ ନାବ
ଆରେ ନାହୁରଅ ଭାଇ ।

କନକ୍ଷେ ଗରଜେ ଲତା ପତର ହୋ
ଆକାଶେ ·ଗରଜେ ଘନ,
କେମନ୍ତେ ବାହିବ ସେ ପାଣିକ ନାଆ ?
ବହେ ପୂରବଇ ପବନ ।

ଡରୁ ଅଛୁ ଆରେ ବାଟୋଇ ଭାଇ ଲୁ
ଦେଖି ବିଲ୍ ନଗ୍ନଝିଅ,
କେଉଁ ଛାଡରେ ମୁଁ ବାହିନେବି ନାବ
ନଈ ବଡ଼ ଝଗ୍ଣରଆ ।

ବହୁତ ଦିନରୁ ଦୂର ପରବାସୀ
ମନ ମୋର ଛନ ଛନ,
ଘରେ ଛନ୍ଦ ମୋର ଜନ୍ମନପିରୁଳ
ଦେଖିବାକୁ ବଡ଼ ମନ ।

ମୁଣ୍ଡ ଗୁଞ୍ଜିବାକୁ ନଈ ଏପାରରେ
ନାହିଁ ନାହିଁ ଢଲେ ଠାଉଁ,
ଥର ଉଠୁଅଛୁ ପାଣି ପବନରେ
[ନାବ ଅଣ ବେଗେ ଭାଇ ।

ବୁହାଇ ବୁହାଇ ମେଘ ବରଷଇ
ନୟନରେ ତ ଝର ସୁଅ,
କେଉଁ ଗ୍ରୁଡରେ ମୁଁ ନାବ ବାହୁ ନେବ
ମୁହଁକୁ ନ ଦଶେ ମୁହ ।

ଦେଖିବୁ ଘରେ କୁ ନୟନପିତୁଳି
ଭେଣ୍ଡ ଉଚ୍ଛନ୍ନ ତୋ ମନ;
କାହା ଓଳତଳେ ଠିଆ ହେବେ ସିଲ
ଯେବେ ଯିବ ଏ ଜୀବନ ।

କୁଳର ଅଙ୍କୁର ନୟନପିତୁଳା
ଅନ୍ଧ-ନଉଡ଼ି ମୋହର,
ଏକୋଇଉବଲା ବର୍ଷିକେଶନ ମୋ
କଇଅଛୁ ତାକୁ ନର ।

ମାଆ ତାର ହୋଇ ବାଉଆଣୀ ପର
ଲେଖି ବିନନ୍ତୁ ପତର,
କୃଷିଲି ଠାବରୁ ଉଠି ଆସିବାକୁ
ପଠାଇଥିଲି ଖବର ।

ମଉଷଧ୍ୟ ନେଇ ତରତର ହୋଇ
ନ ମାନି ପାଣି ପବନ,
ଦୂର ବିଦେଶରୁ ଯାଉଅଛୁ ଘରେ
ରକ୍ଷିବି ତାର ଜୀବନ ।

ବରଷ୍ଟୁ ପନ୍ଥକେ ଘୋର·ବରଷାରେ
ବନ୍ଧୁ ଫଟେ ଝର ବାଆ,
ସୁଅ ପାଣି ପଟେ ତଡ଼ି ନେଇଯାଉ
ତଳକୁ ତଳକୁ ନାଆ ।

ପଡ଼ୁ ପଛେ ମୋତେ ଘୋର ବିପଦ ରେ
ପାଶୋରି ଦେବ ତୋତେ,
ଦୟାମୟ ହରି ଜାଣେ ଦୟାକରି
ଉଦ୍ଧାରିବେ ସେଇ ମୋତେ ।

ବିପଦ ପଡ଼ିଲେ ବାଷୋଇ ଯିଇ ରେ
ସାହା ଯେ ନୋହେ ଅନକୁ,
ତାହାର ଜୀବନ ମରଣ ସମାନ
ଧିକ ତାହା ଜୀବନକୁ

# ତ୍ରିବେଣୀ-ତଟେ*

ପଦ୍ମଚରଣ ପଟ୍ଟନାୟକ

୨

ବଡ଼ ଭାଗ୍ୟଫଳେ, ଭାଇ * * ତବ ଶୁଭ ନିମନ୍ତ୍ରଣେ
ଦେଖିଲି ତ୍ରିବେଣୀ ତୀର, କାଳେ କାଳେ ଥିବ ମନେ ।

ଅତୀତର ପୁଣ୍ୟ ସ୍ମୃତି—ପରିଚିତ ନଦୀ ତୀରେ
ଅତୀତ ଦେଶର ଚିତ୍ର ଦେଖିଲି ତ୍ରିବେଣୀ ନୀରେ ।

ଛବି ହେବା ମାନେ ପୂର୍ବପୁରୁଷର ଛାୟା ଆସି
ଦେଖୁ ଦେଖୁ କି କୌଶଳେ ବେଗେ ମୋ'ତେ ଦେଲା ଭାସି ।

ଦେଖୁଥିଲି କଳନାଦିଲା ତଟିନୀ ତରଙ୍ଗ ଖେଳ,
ଧର୍ମ ପ୍ରାଣ ନରନାରୀ ଉଦ୍‌ବେଗ ମଧୁର ମେଳ ।

ସରଳ ବୈଷ୍ଣବ ଶିଶୁ କମନୀୟ କୃଷ୍ଣ ବେଶ
ଗଳେ ଦୋଳୁ ବନମାଳା, ପୃଷ୍ଠେ ବିଲମ୍ବିତ କେଶ ।

ମସ୍ତକେ ମୁକୁଟ, ଅଙ୍ଗେ କେତେ ଚିତା ମନୋହର,
ନୟନେ କଜ୍ଜଳ, ପୁଣି ଲଲାଟେ ସିନ୍ଦୁର ଗାର ।

କଟିରେ ଘୁଙ୍ଗୁର ମାଳ ରୁଣୁଝୁଣୁ ମଧୁ ସ୍ୱନ
ହସ ହସ ମୁଖ କ୍ଷଣେ କେତେ ନବ ଉଚ୍ଚାଟନ ।

ଦେଖୁଥିଲି ସଦ୍ୟସ୍ନାତା ସରଳା କାମିନୀଦଳ
ପଟ୍ଟବସ୍ତ୍ର ପିନ୍ଧି ଧରି କରେ କେତେ ପୂଜାଥାଳ ।

---

* କଲିକତା ନିକଟବର୍ତ୍ତୀ ତୀର୍ଥସ୍ଥାନ । ଏ ସ୍ଥାନରେ 'ମୁକୁନ୍ଦଘାଟ' ପ୍ରଭୃତିରୁ ମୁକୁନ୍ଦଦେବଙ୍କ ରାଜ୍ୟଜୟର ନିଦର୍ଶନ ମିଳେ ।

** ରାଇ-ବଙ୍ଗ ଅଧ୍ୟାପକ ଶ୍ରୀଯୁକ୍ତ କୃତ୍ତିବାସ ସାମନ୍ତରାୟ ।

ଦେବଦ୍ୱାରେ ହସ୍ତ ଯୋଡ଼ି ପ୍ରଣମି ଦେବତା ପଦେ
ମାଗୁଥିଲେ କେବା ବର କେତେ ଭକ୍ତ ସାଧୁ ଜନେ ।

ଶୁଣୁଥିଲି ଶତ ଶତ ଭିକ୍ଷୁକର ଆର୍ତ୍ତସ୍ୱର
ଦୂର ଦେଶାଗତ କେତେ ଯାତ୍ରୀଦଳ-କୋଳାହଳ ।

ଏ ସବୁରୁ କିଏ କାହିଁ ହରିନେଲା ମୋ'ର ମନ
ଦେଖାଇଲା ଆଖି ଆଗେ କେତେ ଛବି ଅଗଣନ ।

ଯୁଗ-ଯୁଗାନ୍ତର ଲଂଘି କେତେ ଦୂରେ ଗଲି ଚଳି,
କି ଦେଖିଲି କି ଶୁଣିଲି ଏବେ ମୁଁ ନ ପାରେ କହି ।

ନ ଆଣିଲେ ସ୍ମୃତି ଆଜ ସେ ସବୁ ମୋ ପାଶେ ଟାଣି,
ନ ଶୁଣାଅ କାନେ ମୋର ଅତୀତ ଗୌରବ ବାଣୀ ।

ନ ଦେଖାଅ ନେତ୍ରେ ମୋର ଏତେ ଗୋଟି ଗୋଟି କରି,
ମୁକୁନ୍ଦର ଶୌର୍ଯ୍ୟ, ବୀର୍ଯ୍ୟ, ମୁକୁନ୍ଦ ଦେବଙ୍କ ଶିରୀ ।

ମୁକୁନ୍ଦର ବାହୁବଳ, ଧର୍ମେ କର୍ମେ ଶୁଭମତି
ପ୍ରାଣପଣେ ଦେଶସେବା ଅଦମ୍ୟ ସ୍ୱଜାତି-ପ୍ରୀତି ।

ଗୋହ୍ମସ୍ୱର ପୂର୍ଣ୍ଣ କ୍ଷେତ୍ରେ ଦେବପାଇଁ ଅଶ୍ୱବଳି,
ବୀର ଦର୍ପେ ନାଚି ନାଚି କପର ଘଡ଼ିଲା ଢଳି ।

କପର ସେ ଦେଶ ଜିଣି ଆସିଲା ତ୍ରିବେଣୀ-ତୀରେ,
କପର ତା ଆଣ୍ଟ ଗ୍ରନ୍ଥା ପଢ଼ିଲା ଏ ନଗ୍ନ ମଧିରେ ।

କପର ସେ ପୋଡ଼ିଥିଲା ଜୟସ୍ତମ୍ଭ ଏହି ଦେଶେ
କପର ଦୁର୍ଭିକ୍ଷ ନେତ୍ରେ ବୁଲୁଥିଲା ବୀରବେଶେ ।

କପର ସେ ପ୍ରଜାପୁଞ୍ଜେ ପାଳୁଥିଲା ପୁତ୍ର ପରି
କପର ତା' ନାମ ଶୁଣି ଯାଉଥିଲା ଶତ୍ରୁ ଥରି !

ସରିଛି ସେ ସବୁ ଆଜ, ଲାଗୁଛି ସ୍ୱପନ ସମ,
ଅଛି ଦେଶ, ନାହିଁ ତହିଁ ମୁକୁନ୍ଦର ପରାକ୍ରମ ।

ମୁକୁନ୍ଦର ସିଂହାସନ ଗଲାଣି ତ କାହିଁ ଚୁଲି !
ବକ୍ଷ ମଧ୍ୟେ ଝଂପ୍ର ହୋଇ ବହୁଛି ଦେଶଟା ଖାଲି !

ସିଂହର ସଦନେ ଆଜ ରହିଲେ ଶୃଗାଳ ଦଳ !
କେତେଦିନେ ଫେରିଲେ ଆହା କେତେ କ୍ଲୀବ ସ୍ଥାନବଳ !

ଜଳ ଛାୟା ନଜେ ଦେଖି ଉଦ୍ୱେ ଯାଆନ୍ତୁ ଅଣ,
ଛି, ଛି, ମୁକୁନ୍ଦର ଦେଶ ହେଲା ଆଜି ଏତେ ସବ !

ବହୁଛି ତ୍ରିବେଣୀ ଆଜ ରହିଛି ରାଜାଙ୍କ ଘାଟ,
କାହିଁ ସେ ରାଜାଙ୍କ ଦେଶ, କାହିଁବା ସେ ରାଜ୍ୟପାଟ !

( ୨ )

ବହୁଛି ତ୍ରିବେଣୀ ଆଜ ରହିଛି ରାଜାଙ୍କ ଘାଟ,
କାହିଁ ସେ ରାଜାଙ୍କ ଦେଶ କାହିଁ ବା ସେ ରାଜ୍ୟପାଟ ?

ପୁଚ୍ଛିଲେ ଏ ପ୍ରଶ୍ନ ପ୍ରାଣୁ ଉଠେ ବାକ୍ୟ ବକ୍ଷ ଫାଟି,
ଅନୁଭବ ହେବ ନାହିଁ ମୁକୁନ୍ଦ ଦେଶର ମାଟି ।

କ୍ଷୁଦ୍ର ମଣ୍ଡି ଉପୁଜାଏ ଜନ୍ମଭୂମି ଶତ ଶତ,
ଦେଶ ଭକ୍ତ ସାଧୁ ଚକ୍ତ ନୁହେଁ ଉତ୍ସେ ପରିଣତ ;

ବୀର ଉକ୍ତେ ବୀର ଗଢ଼ା କଥା ଅଛୁ କାଳେ କାଳେ,
ବୀରର ଶ୍ମଶାନେ ବାଳ ଶିଶୁ ଖେଳେ ଏ ସଂସାରେ ।

କୀର୍ତ୍ତି ଦେହ ଧୂଳି ହୋଇ ପଡ଼ିଅଛୁ ଏହୁ ଦେଶେ,
ଗୌରବର ଅସ୍ମା ଆଜ ବୁଲେ ଦେଶ ଗ୍ରାମପାଶେ ।

ଭ: ଚ: ୧—୭

ହାତଠାରି ନୀରବରେ ଡାକେ କାନେ କାନେ କଥା,
'ଉଠ ଜାଗ, ଉଠ ଜାଗ,' ନ କହରେ ନତ ମଥା

ଗୌରବର ଧୂଳି ବୋଲି ହସି ହସି ରାଜପଥେ,
ଜୟ-ଶ୍ରୀ ଭୂଷିତ ହୋଇ ବସ ପୁଣ୍ୟ କୀର୍ତ୍ତି-ରଥେ ।

'ଅତୀତକୁ ସାକ୍ଷୀ କରି ଗଢ଼ିଯାଅ ବର୍ତ୍ତମାନ',
ଅନଙ୍ଗ, ଯଯାତି ଦେଶ ଜୁହେଁ ନୀଚ ଜୁହେଁ ସାନ ।

'ବୀର କପିଳେନ୍ଦ୍ର ଯହିଁ କଲେ ଦୂର ଦେଶ ଜୟ
ସେ ଦେଶ କି କେବେହେଲେ ହେବ ମ୍ଳାନ, ହେବ ହେୟ ।'

ମୁକୁନ୍ଦର ମୁକ୍ତ ଆତ୍ମା ଯାଇଛି ଯେ ଦେଶେ ଖେଳି,
ସେ ଦେଶ ଲଲାଟେ ଲେଖା ବିଜୟ-ବିଭୂତି ଟିକି ।

ବୀର ଦେଶେ ବୀର ଆସି ଯାଇଛନ୍ତି ସିନା ଚଳି,
ଅଛୁ ତ ହେ ରବି, ଶଶୀ, ଅଛୁ ତ ହେ ଗିରି ଦଳି ।

ଅଛୁ ତ ହେ ଶୈଳ, ସିନ୍ଧୁ, ଅଛୁ ସିନ୍ଧୁ-ଗର୍ଜନ,
ଅଛୁ ସିନ୍ଧୁ-ବେଳାଭୂମି, ଅଛୁ ନଭେ ତାରାଗଣ ।

ନଗରେ, ପ୍ରାନ୍ତରେ ଅଛି କେତେ ତୁଙ୍ଗ ଦେବାଳୟ
ରହିଛି କନକ ଶ୍ରେଣୀ, ଉଡ଼ନ୍ତି ମଧୁ ମକ୍ଷୀୟ ।

ଉହିଛି ପ୍ରକୃତି-ଦେବୀ, ହସୁଛି ତ ଋତୁ ଋତୁ
ଅମ୍ବର ଭେଦ ଭୁଲି ଡାକୁଛି ଅନନ୍ତ ଶ୍ରୀତି ।

ସମ୍ମୁଖେ ତ ଉଡ଼ୁଅଛି, କମ୍ପ ଦେଖି କହ ଅରେ
କେତେକାଳ ସେ ମଣ୍ଡପ ନିର୍ବନ୍ଧ ଗୁମ୍ଫିତରେ ।

ସେ ଅତୀତ କେତେକାଳ ବୁଲୁଥିବ ଶୂନ୍ୟ ଦେଶେ
ଭୂତ ପ୍ରେତ ପରି କେତେ କାମ୍ୟା ସ୍ୱପନ ଛାୟା ବେଶେ !

କେବେ କାୟା ଧରି ଆସି ମାୟା ରୂପ ପରିହରି,
ଜୀବନ ଯୌବନ ଦେବ ସ୍ୱଦେଶ ପସ୍ୱଣେ ଭରି ।

ହସିବ କୁଟୀର ସୌଧ, ହସିବ ନଗର ପଲ୍ଲୀ,
ହସିବେ ଆକାଶ-ପକ୍ଷୀ, ତଟିନୀ ତରୁ ତୃଣ ବଲ୍ଲୀ ।

ଘରେ ଘରେ ବାଳ ଶିଶୁ ଖେଳିବେ ଆନନ୍ଦେ ଖେଳ,
ଆଶା, ପ୍ରୀତି, ଆନନ୍ଦର ଲଭିସିବ ମଧୁ ମେଳ ।

ଗାଇବ ଗରବେ କବି କଣ୍ଠେ ନବ ବୀଣା ଯେନ,
'ଜୟ ମା ଜନମ ଭୂମି ଜୟ ବୀଣା ସ୍ୱରବର୍ଣ୍ଣୀ' ।



(ଉତ୍କଳ ସାହିତ୍ୟ, ବ. ୨୦।୩ ସଂ. ରେ ପ୍ରଥମେ ପ୍ରକାଶିତ)

# ସବୁଥିରୁ ବଂଚିତ କର

(କାନ୍ତକବି) ଲକ୍ଷ୍ମୀକାନ୍ତ ମହାପାତ୍ର

ସବୁଥିରୁ ବଂଚିତ କର
କେଉଁ ଯଶ ବାନା ଉଡ଼ାଇବ ହେ ।

ଯାହା ଦେଇଥିଲ ସବୁତ ନେଲଣି
ଆଉ ଏବେ କିସ ଛଡ଼ାଇବ ହେ ।

ସଂସାରେ ଯେ କରଇ ଆଶ
ଧାଏ ସିନା ସେ ତୁମ ପାଶ ।

ସକଳ ଭରସା ଯାଉ ତୁଟିଲାଣି
କିସ ଦେଖି ତାକୁ ଡରାଇବ ହେ ।

ଠକ ଠକ ଅରକୁ ଅର,
ବୁଝିଲିଣି ତୁମ ଗୁମର

ମନେ ପାଉଛକି ହାଟ ମଝିଟାରେ
ଛଡ଼ାକରି ହାଟ ବୁଲାଇବ ହେ ।

ତୁମ୍ଭ ଫନ୍ଦା ଏଡ଼ାଇ ବୋଲି
ସବୁ ଧନ୍ଦା ଦେଲିଣି ଠେଲି ।

ସ୍ବର ଦଉଡ଼ି ଯେ ବାନ୍ଧି ସାଉଳିଣି
କେଉଁ ଗାନରେ ତାକୁ ଜଡ଼ାଇବ ହେ ।

ହାତ ଠାରି ଲୋଭ ଦେଖାଇ
ଡାକ ବାଟ ଦେଖିବା ପାଇଁ,

ସିହ୍ନାଣ କରୁଛ ଅଙ୍ଗୁଳି ଅନେକ
ନାକ ଘଷି ଭାବ ମୋଡ଼ାଇବ ହେ ।

—:✻:—

( 'ଜୀବନ ସଂଗୀତ' ରୁ ଉଦ୍ଧୃତ )

# ଚଟି

## ଗୋଦାବରୀଶ ମହାପାତ୍ର

ମରଣର ଅବଶେଷେ ମାଂସନେ ଭଅ ତୁମେ ବଳ
ଅବାଂଛର ବନ୍ଧୁ ତୁମେ ହେ ଚଟି ମୋ ଚରଣ-ସମ୍ବଳ ।

ଯାଂଯୀ ମୁହିଁ ଯିବ ଦୂରେ ଅନ୍ତଯମି ନେଲ, ବନ, ଗିରି
କଣ୍ଟକିତ ପଦପ୍ରାନ୍ତେ କଙ୍କଟିଲ ଯିବି ମାଟି ଗୋଡ଼ି ।

ବୁକେ ତବ ପଦାଘାତ ଧରଣୀରେ ଘୁଲେ ଅବିରଳ
କା'ରେ ତ ନକର ମନା, ସର୍ବଂସହା ! ଚୁଂବ ପଦତଳ ।

ପ୍ରତି ପଦଘାନ୍ତତ ହୃଦେ କି ଶବ୍ଦ କି ଖ୍ୟପାରେ କହ—
ଏ କି ଦବ ସେ ଜନବ ପଶୁଶ୍ରମା ବୁଝିପାରେ ନାହିଁ ।

ଯେ ପଥେ ଗଲେ ହେ ବନ୍ଧୁ ଘୁଲି ଘୁଲି ପଦଯାତ୍ରୀ ଦଳ,
ଯେ ପଦେ ପୁଜିଲେ ବସି ପୁରବାସୀ ଦେଇ ପୁଷ୍ପ ଜଳ ।

ନେଇ ଯେ ଚରଣ ରେଣୁ ଭକ୍ତବୃନ୍ଦ ଦେଲେ ଖାଲି ବୋଲି
କେହି ତ କହିଲେ ନାହିଁ ଚଟି ତୁମେ ତହିଁ ଥିଲ ବୋଲି ! !

ସେଥିର ଚନ୍ଦନ ଟୋପେ, ସେ ଫୁଲର ପାଖୁଡ଼ାଏ ଦେଇ
ସେ ଚରଣ ସାଥୀ ବୋଲି ଅଭ୍ୟର୍ଥନା କେହି କଲା ନାହିଁ ।

ତଥାପି ହୋଇଚ ତୁମେ ସହଯାତ୍ରୀ ଚରଣ ପ୍ରାନ୍ତରେ
ତୁମକୁ ପଚାରେ ମୁହିଁ, କହିବ କି ବନ୍ଧୁ ଏକାନ୍ତରେ ?

ତୁମେ କି ଜାଣିବ ନାହିଁ ଅଜି ଏଇ ଗଣତନ୍ତ୍ର ଦେଶେ
ଫାଙ୍କିତ, ପଦାନତ ହୃଦ ଜାଗି—ଶୁଭେ ଦଶେ ଦଶେ ।

ଆପଣାରେ ଘୋର ଯେନ୍ତୁ ପରେ ଦଏ ଜୀବନରେ ବଳ
ତୁମେ କି ହେବ ହରିଜନ, ତୁମେ ସେହି ଆଦିବାସୀ ଦଳ ?

ପଶୁର ଚମଡ଼ା ତୁମେ, ପଶୁ ଆତ୍ମା ଯାଇ ଅପସରି,
ଆଶ୍ରୟ ନେଇଚ କେତେ ଏ ଦେଶର ନର ଦେହ ଭରି ।

ନାହିଁ ଶିଙ୍ଗ, ନାହିଁ ପୁଚ୍ଛ, ନାହିଁ କିଛି ଜାଗ୍ରତ ଚେତନା,
ତୁମ ଗାଢ଼ ଆଲିଙ୍ଗନେ ଚେତା ତାର ଆସିପାରେ କିନା ।

ଘାରିଚ କ୍ଷମତା-ମଦ ନର ତନୁ ଆବରଣ ତଳେ,
ଦେଖି ସେ ନ ପାରେ ଏଠି ଲକ୍ଷ ପ୍ରାଣ ଜଳେ କ୍ଷୁଧାନଳେ ।

ଆହାର-ମେଥୁନ-ନିଦ୍ରା-ଭୟ-ତନ୍ଦ୍ରା-ସ୍ୱାର୍ଥ-ଲୋଭ-ମୋହ,
ଶାସନର ସିଂହାସନେ ବସି ଆଜ ଦେଖୁଣି ଦୁର୍ବହ ।

ଏଣୁ ଏ ଚକ୍ଷଣ ଚଳ ଉଠ ଚଟି ନେଇ ନବ ପ୍ରାଣ,
ଜାତିର ଏ ସନ୍ଧିକ୍ଷଣେ ଦିଅ ତୁମେ ଜୀବନ ପ୍ରମାଣ ।

ତୁମର ଆଦର୍ଶେ ତୁଟୁ କ୍ଷମତାର ମୋହ ମଦ ଯାଜ,
ତୁମ ନାମେ ଲୋପ ପାଉ ଦୁନିଆର ସବୁ ଧର୍ମଧ୍ୱଜ ।

ତା'ପରେ ଫେରିବ ବନ୍ଧୁ ସାଥୀରୂପେ ଶତ୍ରୁତ୍ରାଣକର,
ମୁଣ୍ଡର ପତାକା ତଳେ ମିଳିବେ ନେଟିବ କାପାଳିକ ଦଳ ।

ଫୁଟାଇ ସ୍ୱପ୍ନଲେ ଯିଏ ଖାଇବାର ଚଣ୍ଡ ମୁକ୍ତିରେ,
ଅହିଂସାର ମନ୍ତ୍ରମୁଗ୍ଧ ସେ ଦିନ ହେ ସାବଟମଣ୍ଡରେ ।



# ବିଷାଦଭରର ଉଚ୍ଛ୍ୱାସ

କୁନ୍ତଳା କୁମାରୀ ସାବତ

—୧—

ତଇ ମାଘର ଅବଧି ଏ ପୋଡ଼ା ଜୀବନେ,
ଆସିବ ଫଗୁଣ ଦଶା ଦକ୍ଷିଣା ପବନେ ।
ଜାଗେ ଅନ୍ତ ଦିନ ସ୍ତବ୍ଧ କୋକିଳର ବଧୂ,
ଆସିବ ଅମୃତ କାନ୍ତ ଫୁଲପନ୍ତ୍ର ମଧୁ ।
ଚମ୍ପାବୃତ ଅଙ୍ଗ ସିନା ଝୁରିମରେ ପଟେ,
ଯାଇବ ଗାଇବ ଦୋଳେ ବସନ୍ତ ହସିଲେ ।
ପଥମ ସାଣ୍ଟା ତାଟନ
ଫାଲ୍‌ଗୁନ୍ନ ଦଶା-ଯାମେ
ଝରିବ ସ୍ୱରଗ ସୁଧା ସଞ୍ଜୀବନୀ ଧାର,
ସିଞ୍ଚିବ ଗୋ ତରୁକୁଳ ଫୁଲ ଅଳଙ୍କାର ।
ଅଙ୍ଗ ନ ଲୁଚାଇ ଲାଜେ କେତକୀ କାମିନୀ,
ସୁନ୍ଦର ଚୁମ୍ବନେ ଯେବେ ଚୁମ୍ବିବ ଯାମିନୀ !
ନବୀନ ବକୁଳମାଳ ବାସ ଚହଟାଇ ,
ବହିବ ମଳୟ ମନ୍ଦ ହୃଦ ଭୁଲିଯାଇ ।

—୨—

କମ୍ପା ଅଙ୍ଗମାନେ କାନ୍ଦି ଗୋଲାପ ମଲ୍ଲିକା,
ଫୁଟିବ ଫୁଟିତ ବାସ କୁସୁମ କଳିକା ;
ଶୋଭିବ ଚକ୍‌ଚକ ବୃକ୍ଷ କୋମଳ ପଲ୍ଲବେ,
ଶୀତଶୀର୍ଣ୍ଣ ପଦସ୍ଥଳ ଝୁରୁଛ ନୀରବେ ।

ନବୀନ ବାସନ୍ତୀ କାନ୍ତି,
ନାଶିବ କଷଣ ଶ୍ରାନ୍ତି,
ହରିବ ଦୂଷଣ, ଶିଶୁ ଫୁଟିବ ଆନନେ,
ହସିବ ବସନ୍ତ ଯେବେ ବିତାନେ ଗଗନେ ।
ବାଜିବ ବଂଶୀର ବୀଣା ଫୁଲ କୁଞ୍ଜେ କୁଞ୍ଜେ,
ରସିବେ ଭୃଙ୍ଗ ନବ ଗୀତ ମଞ୍ଜୁ ପୁଞ୍ଜେ ।

—୩—

ଚିର ମାଘ ନ ଥିବ ଏ ମୋହର କପାଳରେ,
ନାଚି ମୋ' କମଳ ବନ ଶିଶିର ମାଳରେ ।
ହାସ୍ୟ ବାସ୍ୟ ରସ ଗାନ ଧ୍ୟାନ ଅନିବନ୍ଧ,
ଉସ୍ରଙ୍କେ ଫୁଟିବ ମଧୁ ତୃଷିତ ମିଳିନ୍ଦ ।
ଛନ୍ଦାସେ ଆକାଶେ ବୃଦ୍ଧି ନାଦେ କୁବଳୟ,
ହେବ ଯୀଣ ଗ୍ରସ୍ତକରେ ଅଥୟ ହୃଦୟ ।
ହେବ କ୍ଲେଶ ଅବସାନ,
ଘୁଞ୍ଚିବ ତା' ଅପମାନ,
ମଧୁର ମାଧବୀ ପ୍ରାତେ କନକ-କଳଶେ,
ନଖିଲ କୁସୁମରାଣୀ ଅରୁଣ ଚରଣେ ।
ସ୍ନେହେ ଟଳ ଟଳ ହୁଅ ହେବ ପ୍ରଫୁଲ୍ଲିତ,
ଶୋଭିବ ସରସୀଜଳ ମୃଦୁ ହିଲ୍ଲୋଳିତ ।

—୪—

ଚର ନ ମଣିବ ଝୁର ତୃଷାର ତରସେ,
ଗନ୍ଧ ବିତରିବ ମନ୍ଦେ ବକୁଳ ଉଲ୍ଲାସେ ।
ଶତ ସୁରଭି ସୁମନ ସାଜେ ଶୋଭାମୟୀ,
ମଳୟ ଉଲ୍ଲାସେ ରସି ହସିବ ତ ମହୀ ।

ଚିର ମାଘ ନ ଥିବ ତା ପୋଡ଼ା ଅଦୃଷ୍ଟରେ,
ଚିର ନ ଦଳିବ ବଳୀ ଦର୍ପିତ ପାଦରେ ।
ଏ ଲୁହେ ଲିଖିତ,
କେନ୍ଦ୍ର ଚିର କୁଟୀ କୋଣେ, କେନ୍ଦ୍ର କୋଟିପତି ।



ଚିର ମାଘ ନ ଥିବ ତା ପୋଡ଼ା କପାଳରେ,
ଚିର ଆଶା ନ ଭାସିବ ନୟନ ଜଳରେ ।
ଦୀର୍ଘ ଦାରୁଣ ଶ୍ରାନ୍ତି,
ନିଠୁର ଦୁସ୍ତର କ୍ଳାନ୍ତି,
ଚିର ତା କଙ୍କାଳ ଦେହ ନ କରିବ କ୍ଷୀଣ,
ଅକାଳେ ଜୀବନତନ୍ତ୍ରୀ ନ ହେବଟି ଛିନ୍ନ ।
ନ ଲୁଚିବ ମନୁଷ୍ୟତ୍ୱ ତେଜଃ ସ୍ୱର୍ଣ୍ଣରଶ୍ମି,
ହସିବ ବସନ୍ତ ଦିନେ ଜୀବନେ ବିକାଶି ।

୩

ଚିର ମାଘ ନ ଥିବ ତା ପୋଡ଼ା ଜନମରେ,
ଚିର ନ ମଣିବ କେହି ଜନ ସରମରେ ।
ଲୁଚୁଥିବେ ଅତ୍ୟାଚାରୀ ଦୁର୍ବଳ ମର୍ମଦ,
ବନ୍ଦିତ ଲାଞ୍ଛିତ ବକ୍ଷେ ସ୍ଥାପିବେ ଶ୍ରୀପଦ ।
ଦୁଃଖୀ ଦୁଃଖ ଦେଖି ଅନ୍ଧ କାନ୍ଦୁଥିବ ବିଶ୍ୱ,
କୋଟିନ କଙ୍କାଳ ଅନ୍ନ ଅପୀଡ଼ିତ ନିଃସ୍ୱ ।
ଏ ଲୁହେଁ ଚିହ୍ନ ବିସ୍ତର,
ଚିର ନ ରହିବ କା'ର ଗର୍ବ ଅନ୍ଧକାର ।



ଚିର ସାଧ ନ ଥିବ କା' ପୋଡ଼ା ଅଦୃଷ୍ଟରେ,
ଚିର ନ ଦହିବ କେହୁ ନିରାଶା କ୍ଲେଶରେ ।
ଜନମ ଜନମ କା'ର ନ ଯିବ ବିଫଳି,
ହତାଶ୍ୱାସେ ଖେଳି ଖରା ସଙ୍ଗେ କରି କଳି ।
ଧରଣୀ ଧୂଳିରେ
ଈଶ ସୃଷ୍ଟି ସାଥି ନାହିଁ ଯିବ କି ମିଶିରେ,
ଏହି ତା'ର ଶେଷ ?
ନୁହେଁ ନୁହେଁ, ଅଛି ଖେଳ ଜୀବନ ଅଶେଷ ।



ବ୍ୟର୍ଥ ଏ ମାନବ ଦେହ ନ ଧରିଲି ଭବେ,
ମାନବର ଆଶା ଯେବେ ନ ପୂରିବ ଲବେ ।

ଜନମ, ଜନମ ବୃଥା ଲଭିବ କି ଫଳ,
ଅନ୍ଧ କର୍ମସ୍ୱପ୍ନ ମାତ୍ର ଯଦି ତା ସମ୍ବଳ ?
ଦେବତ୍ୱ, ମହତ୍ତ୍ୱ,
ନାହିଁ ଯେବେ ଜୀବନେ, କେ ବୁଝେ ମାନବତ୍ୱ ?
ବିଧାତାର ଛଳ
ନୁହେ ଏ ଜଗତ ବୃଥା ମାୟାର କୌଶଳ ।

ବୃଥା ଇନ୍ଦ୍ରଜାଲ ଖେଳ ଦେଖି କେ ଭୁଲିବ,
ଶତ ଶୋକ, କଷ୍ଟ, କ୍ଲାନ୍ତି କାହିଁ କେ ସହିବ ?

ଜରା ମୃତ୍ୟୁ ଦୈନ୍ୟ ଗ୍ଲାନି କେ ବହିବ ଶିରେ,
ମାନବର ଆଶା ଯଦି ନ ପୂରେ ମର୍ତ୍ତ୍ୟରେ ।

— ୯ —

ତର ମାଘ ନ ଥିବ କା' ପୋଡ଼ା ଯନ୍ତ୍ରଣରେ,
ତଉ ନ ଥିବ କା' ଢନ ଘର ଶରଣରେ ।

ଶୀର୍ଣ୍ଣ ନ ଶୋଇବ ଜୀର୍ଣ୍ଣ ଦୀନ ନିକେତନେ,
ଅଶନ ବସନ ଚନ୍ତା ମାରିବ ଜୀବନେ ।

ନଜ ବାଲ୍ଦାଡ଼େ ବସି ବୋଲାଉ ଭିକାସ,
ନଜ ଅରଜିତ ବିଭେ ଲୁଚେଁ ଅଧିଭାସ ।

ମୁଣ୍ଡ ଝାଳ ଭୂଣ୍ଡେ ଝଡ଼ି ହେବ ଦରମ-ସ୍ୱଜନ,
ଛିଣ୍ଡା କନ୍ଥା ଅମୃତ ତା' ହବ ତନ୍ତ୍ର-ଖାଣ୍ଡ ।

ଏ ଲୁଚେଁ ଶାଣ୍ଡିତ,
ନବ ଭୁଜବଳେ ଉଠିବ ସେ ପ୍ରଦାନତ !
ସେ କ୍ଷୁଦ୍ର ପାଷାଣ ,
ରଚିବ ବ୍ରହ୍ମାଣ୍ଡ ଶିଖ ମହାଗିଣମାନ ।
କ୍ଷୁଦ୍ର ଦୀପାଧାର,
ପ୍ରଚଣ୍ଡ ମାର୍ତ୍ତଣ୍ଡ ତେଜେ ନାଶିବ ସଂସାର ।

— ୧୦ —

ତର ମାଘ ନ ଥିବ କା ପୋଡ଼ା କପାଳରେ,
କାହିଁ ମୁଁ ଭାସିବ ତେବେ ନୟନ ଜଳରେ ?

କାଣେ ଏ ଜୀବନ ଲୁଚେଁ ମାୟାର ଛଳନା,
କସ୍ତୂରୀ ଜନ୍ମିତ ଚଳ ସେପରଣ ସାନ୍ତ୍ୱନା ।
ଅକାଳେ ମରିବା ପାଇଁ,
ଜଗତେ ଜନମି ନାହିଁ ।

ଅନନ୍ତ ଜୀବନ, ପ୍ରାଣେ
ଅନନ୍ତ ପ୍ରେରଣା,
ତୁମ୍ଭେ ମାନବ ମାତ୍ର
ମାଟିର ଖେଳନା ।

ଜାଣେ ଏ ଜୀବନ ତୁମ୍ଭେଁ
ଜଳର ବୁଦ୍‌ବୁଦ୍‌,
ଅଥ ନବ ଉର୍ମି ସ୍ପନ୍ଦରେ
ହେବି ମୁଁ ଉଦ୍‌ବୁଦ୍ଧ ।

ଜନମ ଭୂମି ଏ ପ୍ରେମ
ଲୀଳା ନିକେତନ,
ତହିଁ ତୁମ୍ଭେଁ ମିଛ ମେଳା
ଭବ ଆୟୋଜନ ।



# ଝଞ୍ଜା ବୈଶାଖୀ

କ୍ଷିତୀଶ ଚନ୍ଦ୍ର ଦେବ

ବହୁ ଯା' ରେ ଝଡ଼ ବହୁ ଯା
ମୋର ସବୁ ଦେହ ମନେ ବହୁ ଯା,
ମୋର ଅଚେତନ ପ୍ରାଣେ ନର୍ତ୍ତନ ଆଣି
ରୁଦ୍ର ରାଗିଣୀ କହୁ ଯା !
ବହୁ ଯା' ରେ ଝଡ଼ ବହୁ ଯା ।

ଅଂବର ଦେଶେ ସଂହାର ବେଶେ
ପିଙ୍ଗଳ ଜଟା ଉଡ଼ାଇ,
ନାଚ ଯା ହରଷେ ତାଣ୍ଡବ ତାଳେ,
ଦନ୍ତ, ଶୃଙ୍ଗ, ଚୂର ଅଂବୁଦ ମାଳେ,
ବଜ୍ର ପ୍ରହାର-ବସୁଧାର ବକ୍ଷେ
ଦେ ରେ ତ୍ରିଭୁବନ ଥରାଇ,
ଧ୍ୱଂସ ଲୀଳାରେ ମାତ ଯା କ୍ଷଣକେ
ଭୀମ ଡଂବରୁ ବଜାଇ ।

ଉଡ଼ି ଯା' ରେ ବେଗେ ଉଡ଼ି ଯା,
ତୋର ନୃତ୍ୟ ପଦାଘାତେ ଦଳି ଯା,
ଦମ୍ଭର ମଥା ଅବନତ କରି
ବାଧା-ବନ୍ଧନେ ଦଳି ଯା !

ଯୁଗେ ଯୁଗେ ଯେଉଁ କଙ୍କାଳ ଜମି,
ହୁଅଇ ଅଭ୍ରଭେଦୀ,
ନିଷ୍ଠୁର ତୋର ଖଡ଼୍ଗେ ତାହାର
ମସ୍ତକେ ଦେ' ରେ ଛେଦି !

ଅରେ ପ୍ରଳୟ-ଅଗ୍ରଦୂତ
ଆରେ ରୁଦ୍ରର ପ୍ରିୟ-ସୁତ,
ଅଘାତେ ଆଘାତେ ମର୍ତ୍ତ୍ୟ ଯା' କରୁ
କରି ଦେ ଚୂର୍ଣ୍ଣୀଭୂତ !

ଅକ୍ଷମ ଯେତକ ଚଳିବାକୁ ପଥେ
ଅଚଳ, ପ୍ରାଚୀନ, ଯାହା
ତର୍ଜନୀ ଟେକି ବାଧା ଉପୁଜାଏ
ରୋଧ କରେ ଖାଲି ଯାହା;
ଫିଙ୍ଗି ଦେ ତାକୁ ଫୁତ୍କାରେ ତୋର
ବାଧାହୀନ କର ପଥ ଜଗତର,
ମୁକ୍ତ ପଥର ସାଉଣ୍ଟି ଯେ ଭୃଙ୍ଗ
ଅଜଣା ପଥର ସାହା,
ନିର୍ମୂଳ କର ଭୈରବ ବେଗେ
ଅଚଳ ପ୍ରାଚୀନ ଯାହା !
ମହାକାଶେ ତୋର ଲାଗି ଯା
ଖଣ୍ଡଭଗ୍ନ ତ ଯାହା ଲାଗି ଯା,
ଗଠନ-ଲକ୍ଷ୍ମୀ ବେଳ ବୁଝି ଡାକେ
ଆପେ ଆସିବ ନୂତନ ବେଶରେ ଆସି ଧନେ,
ଲାଗିଥାଉ ବା ଲାଗି ଯା ଆଜ,
ରୋଷାନଳେ ତୋର ଦଗ୍ଧ ଯା,
ଦଗ୍ଧ ଯା'ରେ ଝଡ଼ ବନ୍ଧୁ ଯା ।



# ଆଧୁନିକ ବର୍ବରତା

ବୈକୁଣ୍ଠ ନାଥ ପଟ୍ଟନାୟକ

( ୧ )

ଥିଲେ ପୁରାତନ ଆର୍ଯ୍ୟ ଜାତି ଯେତେ କୋଟି
ଏକେ ଏକେ ଧରାତଳେ ପଡ଼ିଲେଣି ଲୋଟି !

ବସନ୍ତ ମଳୟ ଯେହ୍ନେ ଅସ୍ତଗାମୀ ରବ
ସମୁଜ୍ଜ୍ୱଳ ଇତିବୃତ୍ତ ତାଙ୍କ ଭୁଲେ ସବ ।

ପୁରାତନ ଜାତି ସିନ୍ଧେ ନବ୍ୟ ବର୍ବରତା,
ସଗର୍ବେ ପଶୁଚେ ନିଜ ବିଜୟ ବାରତା !

ଦଳି ଅବନତ ଶିର କରେ ରକ୍ତପାନ
ସ୍ୱାର୍ଥର ମର୍ଯ୍ୟାଦା ଅଜ ବୁଝେନାହିଁ ପ୍ରାଣୀ !

ମନ ଯେହ୍ନେ ଭଗବାନ ! ନ ହୁଏ ଶ୍ରବଣ
ଷଧ୍ୱତ ଆତୁର ଜାତି ବିକଳ କ୍ରନ୍ଦନ !

ତଳପଡ଼େ ପ୍ରାଣୀ ପଥେ ଯେସନ୍ତେ ମାଛି ମଶା,
ସଗର୍ବେ ବିଜୟୀ ହସେ ଦେଖି ମ୍ଳାନ ଦଶା ।

ତୁଚ୍ଛ ପଶୁ ପ୍ରାଣେ କେତେ ଥିବଟି ମମତା,
ତା ତତ୍ତ୍ୱ କୁତ୍ସିତ ଘୃଣ୍ୟ ନିଷ୍ଠୁର ସଭ୍ୟତା !

( ୨ )

ବର୍ବର ସଭ୍ୟତା ! ସ୍ନିଗ୍ଧ କର ତୋର ଗତି,
ଶାନ୍ତ ହେଉ ଧ୍ୱଂସ ଲୀଳା ଅସହ୍ୟ ଯେ ଅତି !

ଆଜି ଯେ ବୁଭୁକ୍ଷା ଅଗ୍ନି ଆଗେ ମାଏ ଜନ୍ତୁ,
କାଲି ସେ ଜନ୍ତୁର କ୍ରୋଡେ ପାଉବୁ ତ ସନ୍ତୁ ?

ପୁରାତନ ଦେବାଳୁ ଯାଉ କରୁ ଅବହେଳା,
ପ୍ରାଣର ମାଧୁର୍ଯ୍ୟ ତହିଁ ନ କରେ କି ଖେଳା ?

ସକଳ ନୂଆ ନେଇ ତେଣୁ, ତେବେ ତହିଁ ତ୍ରାସ,
ନାହିଁ ଅବା ତହିଁ ତେବେ ମୁକ୍ତ ଉଚ୍ଛ୍ୱାସ !

ଉଚ୍ଛୃଙ୍ଖଳ ସୃଷ୍ଟି ତ ଯା ଯାହା ଅମଙ୍ଗଳ,
ଯେତେ ବର୍ବରତା ଜାଲ ଦ୍ରବିଛୁ ସକଳ ।

ଆସିଛୁ ସହସ୍ର ମୂର୍ତ୍ତ ମଙ୍ଗଳ ବିଭୂତି,
ପୁରାତନ ମାନବର ସୂକ୍ଷ୍ମ ଅନୁଭୂତି !

ସଂହର ହେ ଧ୍ୱଂସଲୀଳା ପୂର୍ଣ୍ଣ ହେଉ ପ୍ରାଣ,
ପୂର୍ଣ୍ଣ ହେଉ ପୁରାତନ ଶିବ ଅବଦାନ ।

ଜ: ତ: ୯—୨

( ୩ )

ରଣଢ଼ଙ୍କା ତୂରୀଭେରୀ କମ୍ପାଏ ଆକାଶ,
ଧ୍ୱନିତ ଚୌଦିଗେ ବିଜୟୀର ଅଟ୍ଟହାସ !

କୋଟି ଅସହାୟ ପ୍ରାଣ କାନ୍ଦଇ ଆତୁରେ,
ଦର୍ପୀର ଅମୋଘ ଯନ୍ତ୍ର ଚୂରଇ ନିଷ୍ଠୁରେ !

ଦଳିତା ଶାନ୍ତି ମୈତ୍ରୀ କରେ ପଦାହତ,
ପ୍ରତିଷ୍ଠିତ ଯହିଁ ଦିନେ ଖ୍ରୀଷ୍ଟ ତଥାଗତ !

ବହୁଛି ରକ୍ତର ବନ୍ୟା ଗରଜେ କମାଣ,
ପ୍ରକ୍ଷିପ୍ତ ବିଷାକ୍ତ ବାଷ୍ପେ ପ୍ରାଣୀ ଲକ୍ଷମାନ !

ଆଜି ମଧ୍ୟ ତଥାଗତ ମାଗୁଛନ୍ତି ଭିକ୍ଷା,
ଖ୍ରୀଷ୍ଟ ହୃଦ ରକ୍ତଧାର ପଡ଼ିନାହିଁ ଫିକା ।

ଅଦ୍ୟାପି ମାନବ ଦ୍ୱାରେ ଯାଉଅଛୁ ଡାକ,
"ସଂହର ସଂହର ଅସ୍ତ୍ର !" ଅଶ୍ରୁପୂର୍ଣ୍ଣ ଆଖି !

କିଏ ବା ଶୁଣିବ ଡାକ ଡାକିଲେ କାତରେ ?
ମାନବ ଯେ ନାହିଁ ଆଜି ଆପଣାରି ଘରେ !



# ଆଗାମୀ

## କାଳନ୍ଦୀଚରଣ ପାଣିଗ୍ରାହୀ

ବଜ୍ର ଗରଜଇ, ସଘନ ବହେ ବାୟୁ
ମହଲା କଢ଼ି ସମ ଝଡ଼େ ମୋ' ପରମାୟୁ ।

ଅସୀମ ସମୟର କୋଳେ ସେ ହୁଏ ଲୀନ
ଅଗାଧ ଜଳଧି ତଳରେ ଯଥା ମୀନ !

ବନ୍ୟା ସମ କେତେ ଆସଇ ଶୋକ ମାଡ଼ି
ପରଣେ ଅକରୁଣ ଅଘାତ ଯାଏ ମାରି ।

ଝରିଇ ଯାଏ ଦେହ ପାଦରୁ ଖସେ ଭୁଇଁ
ଅଚ୍ଛୁ ବା କାହିଁ ଜନେ ନ ପାରେ ଖୁଜି ମୁହିଁ !

ତଥାପି ଦୁନିଆକୁ ଦାରୁଣ ହସ ହସି
ଆଗାମୀ କାଳର ମୁଁ କବିତା ରଚେ ବସି !

ଶରତ ସକାଳର ଭାସ୍କର ପରି ମୃଦୁ
ବାସନା ଆସି କେତେ ମିଳାଇ ଯାଏ ହୁଦୁ ।

ଶରତ ସକାଳର ଶେଫାଳି ଫୁଲ ପରି
ଦିନକ ପରେ ଦିନ ଝରବେ ପଡ଼େ ଝରି !

ଜୀବନେ ଯେଉଁ କଥା ହୋଇଲା ଦୁର୍ବହ
ଗୁଡ଼ରେ ଲୁହା ସମ ତାତଲ ଟହ ଟହ ।

କି ଅନ୍ତ ପରିଣାମ କି ଅବା ତା'ର ଗତି
ବକ୍ର ସମ ଅଙ୍କେ ରେଖ କି କହିପାରି ?

ଜାଣିବ ପଣ୍ଡିତ କହିଲ ରବି ଶଶୀ
ଆଗାମୀ କାଳର ମୁଁ କବିତା ରଚେ ବସି !

ଯୋଡ଼ିଲି ଛନ୍ଦ ମୁଁ ଚିତ୍ତ ଭାବନର
ଖେଳାଇ ନାଚ ଯହିଁ ବିଶ୍ୱ ଚରାଚର ।

ଖେଳୁଛି ମରଣକୁ କରି ସେ ଉପହାସ
ବେଦନା ଶୋକ ତାପେ ପାଉଛି କରି ଦାସ !

ଉଠଇ ନାଚ ଯହିଁ ଊର୍ମି ହରଷର
ଖେଳୁଛି ନ ଗଣି ସେ କିଏ ବା ନିଜ ପର ।

ବିରାଟ ସେ ଜୀବନେ ମଧୁର ଅଛି ମୂଲ୍‌
ବୁଝଇ ନର ତହିଁ ପଡ଼ିଲେ ନିଜ ଭୁଲ୍‌ ।

ପଡ଼ିଲେ ପର ଦୁଃଖ ପାରଇ ଅନୁଭବ
ଆଗାମୀ କାଳର ମୁଁ କବିତା ରଚେ ବସି !

ପୁରୁଣା ଅଛି ଯେତେକି ନୂଆର ଉପସ୍ଥିତ
କିଏ ସେ ବାଛୁ ତହିଁ ନିଜର ଯାହା ହିତ ।

ମିଳାଏ ଅନ୍ଧାର ତାହାର ମହା ତେଜେ
କୋଟିଏ ସୂର୍ଯ୍ୟର ରଶ୍ମି ଆଣେ ସେ ଯେ !

ମଙ୍ଗଳ-ମୁଖୀ ଯେତେକ ଶକ୍ତି ଚକ୍ଷୁ ତାର
ଛଳନା ମିଛ ପାଇଁ ବନ୍ଦ କରି ଦ୍ୱାର ।

କୁଞ୍ଚଥା ପଟ୍ଟର ଯେତେ ବଢ଼ିଛୁ ଅକାରଣ
ତାହାର ପରଶୁରେ କାଟଇ ସବୁ ପଣ ।

ତାହାର ପରଶୁରେ ମୁକ୍ତ ହୁଏ ଧରା
ମୁଁ ସେହି ଜୀବନର କବିତା ରଚେ ପରା !

କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ପାଇଁ ଯହିଁ ବଣ୍ଟରେ ହେଲେ ଘର ।

ସକଳେ ଲଭିବାକୁ ମୁଠାଏ ଦୁଧ ଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକା ତ ।

ଫୁଲଟା ଲୁଗା ଜାମା ସବୁଙ୍କ ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାର ନାହିଁ ଭଲେ ।

ଦେହାର ରଖିବାକୁ ନାହିଁ କ ଅଧିକାର
ସବୁରି ପାଇଁ କାମ ଯୋଗାଏ ସରକାର ।

କହିବା ପାଇଁ କଥା ସ୍ୱପୁର ଦାବୀ ଅଛୁ
ମୁଁ ସେହି ସମାଜର କବିତା ବସେ ରଚେ !

ନାହିଁଟି ଅଧିକାର ମରିବା ଲାଗି ଯହିଁ
ଭିକ୍ଷା, ଅନାହାରେ ତାଡ଼ନା ଖାଲି ସହି ।

ମରିବା ପାଇଁ ପୁଣି ଧନର ପାରିବାରେ
ନାହିଁଟି ଅଧିକାର କାହାର ସେହିଠାରେ ।

ଗରିବ ଯେ ସମାଜେ ଜାଣଇ ନାହିଁ ଶୀତ
ଧନୀଙ୍କ ନ କରଇ ଧନରେ ଡକାଇତ ।

ଧନର ବନ୍ଧନମଧ୍ୟେ ନ ହୁଏ କଣା ସବୁ
କେବଳ ପଶୁ ଯନ୍ତ୍ର ଦେଖଏ ନାହିଁ ପ୍ରଭୁ !

କେବଳ ମର୍ତ୍ତ୍ୟର ଶକଠ ନାହିଁ ଭୁଲେ
ଆଗାମୀ ସମାଜର କବିତା ରଚେ ମୁଁ ଯେ !

କବିତା ରଚେ ପୁଣି ନୂତନ ଧର୍ମର
ପୁରୋଧା ହୁଏ ଯନ୍ତ୍ର ବନ୍ଦେ ଅପାମର ।

କାହାର ସେ ଧରମେ ନାହିଁଟି ଛଳେ ଢାଙ୍କା
ପଣ୍ଡବ ମଥା କୋଡ଼ି ମରିବ୍ ଭୟେ ଖାଇ !

କହଇ ସେ ଧରମ ସହଜ କରି କଥା
ଅନେକ ବାସ୍ତୁ ସମ ଆଣଇ ସ୍ୱାଧୀନତା ।

ଛଳ ଅଟେ ଯାହା ରହିଛି ଯେ ବା ମିତ
କେତେ ବା ସତ ତହିଁ କେତେ ବା ଝୁଟା ମିଛ ।

ସକଳ ସତ ତହିଁ ହଠଇ ମଥା ଟେକ
ସେହୁ ସେ ଧର୍ମର ଗାଥା ମୁଁ ବସେଁ ଲେଖି ।

ମିଛରେ ଗଢ଼ା ଯାହା ପଣ୍ଡ଼ବ ଯେବେ ଭାଜ
ଆଗାମୀ ସେ କାଳର କବିତା ରଚେ ଆଜ ।

---

# ନିଦ୍ରିତ ଭଗବାନ

ମାୟାଧର ମାନସିଂହ

—୧—

ଦେବଶିଶୁ ଚଳେ ନରକର ଅଭିସାରେ
ଭଗବାନ ତୁମେ ନିଦ୍ରିତ କେଉଁଠାରେ ?

—୨—

ନିରଞ୍ଜନ ମୁଁ ଆସିଥିଲି ପରା
ଆନନ୍ଦ ବିତରଣେ;
ବାଣ୍ଟିବି ବୋଲି ଅମୃତ ଏହି
ପୃଥିବୀର କଣେ କଣେ ?

ଅମୃତ ଶିଶୁ ଅମୃତ ପିଇ
ଆସିଥିଲି ଧରା ତଳେ
ଦେବତାର ସୁଖ ଅଜାଡ଼ିବ ବୋଲି
ମନଷର ପଦତଳେ ?

ମନ୍ଦାକିନୀରେ ଅବଗାହି ଥିଲି
ଗନ୍ଧ-ଆକୁଳ ଜଳେ
ଗନ୍ଧଚନ୍ଦନ କରିବାକୁ ପରା
ଧରଣୀରେ ପଳେ ପଳେ ?

ଅପସରି ଦେହ ଆଶ୍ଳେଷ ପରି
ଆଣିଥିଲ ସାଥେ ବନ୍ଧୁ
ପରଶେ ମୋହର ସ୍ନିଗ୍ଧ ମଧୁର
ଭରିବାକୁ ଏହି ମନ୍ଦ ?

ଦେବ-ମାତା! ସେଦିନ, ମଙ୍ଗଳ ସ୍ନାନେ
ପନ୍ଦୁଣି ନଖାଳ କେଶ
ପଠିଥାଇ ଦେଲେ ମନ୍ଦ ପେଷେକି
ମୋର ପ୍ରବାସ ବେଶ ?

ମନ୍ଦ ଭୁଲିଛି ମାନବ ଏ ଧରାରେ
ଭଗବାନ, ତୁମେ ନନ୍ଦିତ କେଉଁଠାରେ ?

---

ପଠିଥାଇ ଦେଲ ଗୁଞ୍ଜିଲ ନାଦ କ ଆହ୍ଵ
କି ହେଲା ! ମୋ', ତବ-ଦର୍ଶିତ ପଥ ଜାଣୁଁ ।
ରହିଲ ଜାଣି ଏହି କୁଟହେଳ ଅନ୍ତରାଳେ
ଡାକିବି କାହିଁ ମୁଁ ବିପଦେ ବା କେଉଁ କାଳେ ?
ପଛେ ଆସି ଆସି ଡାକିଲ ଅନେକ ବାର
ନେତ୍ରକେ ଓଢ଼ାଇ ବସ୍ତ୍ର ମୋ ଅନ୍ଧକାର;
ଜନନେ ମୋର ଅଶାନ୍ତେ ଯେ ପାଶେ ଥିଲେ
କୃପାମୟ ତୁମେ, ଶୁଣି ନ ପାରିଲ ଛଳେ ?
ଜୀବନ ଦେଇ ଯେ ନ ବୁଝିଲା ସ୍ନେହ-ଶୋଷ
ଜପର ଜନ୍ମ ତ ବୁଝାଇବ ତା'ର ଦୋଷ ?
ସାଥେଥିବ ନ ଦେଇ ବରଗଇ ଯେ ବା ଦୂତ,
ପ୍ରଭୁ ବୋଲି ତା'ରେ ଡାକିବାରେ ଅଦଭୁତ !

ତେଣୁ ସିନା ମୁହିଁ ଠକିଲି ଧର୍ମରେ ଆସି
ଅଶ୍ରୁ ନ କ ଗୋ ଜାଣର ସଉଗବାସୀ ?

—୪—

ବୁଲି ମୁ ଅସିଛୁ ବହୁଦୂର ପଥେ ପଥେ,
ଦେଖିଲି ତୁମର ଦର୍ଶନାର୍ଥି ଆଉ ମତେ ।
କେଙ୍କଣ ପଛେ, ଉଠି ପଥ ବନ୍ଧଣୀର ଆଶେ,
କେତେଶି ଖୋଜିଛୁ ଦେଉଳକେ ଅଶେ ପାଶେ ।
ତନ, ପତାକା ତେବେ ବା ପଡ଼ିବ ଧରି,
ପଥ ମୁଁ ଯାଆଁ ନ ପର-ଦେଶୀ ପଥଚରୀ ।
କାହିଁ ହେ ତନ, କାହିଁ ହେ ପତାକା ତବ ?
ସାଇଲାଣି ମନ୍ଦିର ଧରଣୀରେ ପଶୁଭବ ।
ଆନେକଦାସୀ ମୁଁ ଅନ୍ଧାରେ ଗନ୍ଧ ମିଶି,
ମୁକ୍ତ ମୁଁ—ମନେ ଅବରୋଧ ଦଶା ଦଶି ।
ତନ ଲୁଖିଲ, ପତାକା ଟେଳ ଉଡ଼ିଲା ତଳେ,
ଗହନ ମୁଁ ପାଇ ହେବ କର ତାନ୍ତ୍ରା ବଳେ ?
ଆଲୋକ ଦେଖାଅ, ଜାଗି ଶୁଣ ମୋର କଥା,
କଦ୍ରା କ ଶୋଭେ ଅଶ୍ରିତ ପାଉଁ ବଥା ?

—୫—

ଅପ୍ସରୀ-ଦେହ-ଆଶ୍ଳେଷ ଧରି ଦେହେ
ଆସିଥିଲି ପରି ସେ ଦିନ ଏ ଭକ୍ତ-ଗେହେ ?
କାହିଁ ସଉରଭ ? କାହିଁ ଦେବତାର ଶିଖ ?
ଏଇ ଦେହେ ମୋର ଚୁମ୍ବିଥିଲି କ ପଙ୍ଖ ?

ଏ ବସ୍ତୁ ଘେନ କି ସ୍ୱର୍ଣ୍ଣ ଜୀବନ-ପଥେ,
ଗନ୍ଧ-ବ୍ୟାକୁଳ, ଚନ୍ଦ୍ର-ଚର୍ଚ୍ଚିତ ସ୍ରୋତେ ।

ଛଳ-ଚଣ୍ଡୁଳି-ଗୁଚ୍ଛା-ସଙ୍କୁଳ ଘାସେ
ଅଳସେ ଆଉଜି, ଶମାଇ ଚରଣ ପ୍ରାନ୍ତେ ।

ଚମ୍କି ଥିଲି ମୁଁ ଲଜ୍ଜାନତ ସୁଖବାଳା ?
ଆଲିଙ୍ଗନେ ତା ବାଜୁଥିଲା କରବଳା ।

ନର ଦେଖିଲି, କାହିଁ ଦେବତ୍ୱ ଗଲା ଚଳି
ସଇତାନ ମୋର ଲକ୍ଷ୍ମୀରେ ନଏ ଭକ୍ଷି !

ଏବେ ଗୋ ଆତୁର ପଳ ପଳ କରି ଝାଏ,
ଆତୁର ପରାଣ ଭଗବାନେ ଡାକୁଥାଏ ।

ବୁଝିଲା କି କେଏ ଗୁରୁ ନିଶ୍ୱାସ ମାନ ?
ତେଣୁ ମୁଁ କୋଳାଇଁ, ନନ୍ଦିତ ଭଗବାନ !




ଧରଣୀରେ ଆସି ମନ୍ତ୍ର ଭୁଲିଲି ପରା
ପାଇବ ନି କି ଦେ ନିସ୍ତାର ପଥଦ୍ୱରା ?

ଦେବତାରେ ଏ ଯେ ସଂସାର ଭୁଲାଇଲା;
ସରଗବସୀ ସେ ମୃତ୍ତିକା ଆଦରିଲା ।

ବିରାଟ ସେ ଆଜି ଧାଉଁଛି କ୍ଷୁଦ୍ର ଆଶେ,
ସନାତନ ପ୍ରାଣ ଢକୁଛି କ୍ଷଣିକ ପାଶେ,

ସୁନ୍ଦର ସେ ଗୋ, ଭୁଲୁଛି ଇତର ରୂପେ,
ଚିର ଉର୍ଦ୍ଧ୍ୱଗ, ଖସୁଛି ଅତଳ କୂପେ !

ନାହିଁ ନିସ୍ତାର ? ନିସ୍ତାର ନାହିଁ କହେ !
ମଙ୍ଗଳ ହାତ ପାତିବାକୁ ନାହିଁ କିଏ ?

ଅମୃତପାୟୀ ମରଣରେ ଢଏ ଧରା ।
ନନ୍ଦନବାସୀ ନରକେ ଚଳଇ ପରା !

ଶଙ୍କର-ଶୂଳ ଗରଜି ଉଠିବ ନାକି
ଅତ୍ୟାସ୍ଥ୍ୟ ଏ ଭାଙ୍ଗିବାକୁ ଟିକି ଟିକି ?

ବିଳାସେ ଅଳସେ ରହିଲେ ଦେବତାଦଳ
କେ ବୁଝିବ ନର ଆତ୍ମାର କଲବଲ୍ ?

ବିଶ୍ୱେ ମୁହିଁ ଯେ ସୃଷ୍ଟି କରୁଛୁ ବପ,
ପ୍ରତିବିମ୍ବା ତା ହେବ ନ ହେ ଅବକାଶ ?

କଳନାଇ ଯାହା ହୁଏ ହେଉ ଅବଧାନ,
ତାକେ ଦେବର୍ଷିଣୁ ବନ୍ଦିଲୁ ଭଗବାନ ?



# ମାଟି ଓ ମଣିଷ

କୃଷ୍ଣଚନ୍ଦ୍ର ତ୍ରିପାଠୀ

ଛାଡ଼ିଦିଅ ଛାଡ଼ିଦିଅ ଛାଡ଼ିଦିଅ ମତେରେ
ଖେଳିଯିବି ବର୍ଷ ଏ ଧରଣୀର ପଥରେ
ଯେତେ ଶ୍ରେଷ୍ଠ ସ୍ୱାର୍ଥ ଯେତେ ଶ୍ରେଷ୍ଠ ବେଷ୍ଟନୀ
ରଖନା ରଖନା ଭିଡ଼ି
ମାଟିର ମୁଁ ସ୍ୱାଦ ମାଟିର ମୁଁ ସମ୍ପଦ
ବର୍ଷର ଜୀବନ ମୁଁ
ବର୍ଷରେ ମିଶିଯିବି ଝରିଯିବି ସତେରେ
ଛାଡ଼ିଦିଅ ଛାଡ଼ିଦିଅ ଛାଡ଼ିଦିଅ ମତେରେ ।

ଅସୀମର କେନ୍ଦ୍ରରୁ ଆସିଛି ମୁଁ ଖସିକରି
ମନେ ଭଲ ଲାଗୁନାହିଁ ଏଥି ବସି ବସିକରି ।
ମୋର ଧନଜନ ଗୋଧନଲକ୍ଷ୍ମୀ ଏ ମଣିଷ ଓ ମାଟିରେ
ଏହାରି ଭିତରେ ନେବ ମୋ ଜୀବନ କାଟିରେ ।
ପାରିବନି କାହାରେ ମୁଁ ଛାଡ଼ି ତ
ସବୁଏ ମୋ ଜୀବନର ନାଡ଼ି ତ ।
ସବୁଜ ଓଠରେ ମୋର ସ୍ୱପ୍ନାତେ
ସବୁଜ ବୁକୁରେ ମୋ ଆଶାଲେଉ ।
କିଏ କାହିଁ କାନ୍ଦୁଛି କିଏ କାହିଁ ପଡ଼ିଅଛି
ଅନାହାରେ ଅନାଦରେ କାହିଁରେ ।
ଯିବି ମୁହିଁ ତାହା ପାଖେ ଧାଇଁରେ
ମୁଁ ସବୁର ପାଇଁରେ ।

ଜାଗ୍ରତ ହଉଥିବ ଜନ୍ମିବ ନାଇଁରେ
ମଣିଷର ହୁଆସ ମୁଁ ଉଠିବ ମୋ ଭିତରେ
ମଣିଷ ମୋ ବୃକ୍ଷତଳ ହୃତ୍ପିଣ୍ଡ ସ୍ପନ୍ଦନେ
ମଣିଷ ହସିଲେ ମୋର ହସିଉଠେ ଦେବକମଳ ପ୍ରସ୍ଫୁଟେ ଜଳରେ
ମଣିଷ ଜାଗିଲେ ମୋର ଜାଗିଉଠେ ସିଂହର ବକ୍ଷରେ ।
ମଣିଷ ଉଠିଲେ ମୁହିଁ ଉଠିଯାଏ ଉଠିଯାଏ
ସୀମାଶୂନ୍ୟ ଆକାଶେ, ଅନନ୍ତ ଅବକାଶେ !
ସୃଷ୍ଟି ମୋର ମନ୍ଦସ୍ମିତ ସୁନ୍ଦର ଉଜ୍ଜ୍ୱଳ ଏ ମଣିଷ ସକାଶେ !!
ମଣିଷଠୁ ଛିନ୍ନ ମୁଁ ହୋଇରେ
ଯାଉବନ ପାଞ୍ଚବନ ଘ ଜୀବନ ବନ୍ଧରେ ।

ମଣିଷ ମଣିଷ ଖାଲି ମଣିଷ ମୋ ଜୀବନର ସମ୍ପଦ ପରମ
ମତେ ଖାଲି ଭଲ ଲାଗେ କଥା ସ୍ୱପ୍ନ ମଣିଷର ସେନେହ
ମଣିଷର ଅମୃତ ମରମ ।
ମତେ କହ ମଣିଷର ସୁଖ ଦୁଃଖ ବେଦନା
ମତେ କହ ମଣିଷର ଅଦ୍ଭୁତ ସୀମାଶୂନ୍ୟ ସାଧନା !
ମତେ କହ ମଣିଷର ଯେତେ ଯାହା ଚରିତ କରଣୀ
ଯାହା ଦେଇ ହସିଉଠେ ମାଟିର ଏ ଧରଣୀ
ମତେ କହ ମଣିଷର ଦୟା କ୍ଷମା କରୁଣାର କଥା ହେ
ମତେ କହ ମଣିଷ କେଉଁଠି କେବେ ଗୁଲିଅଛି ଗରବେ
ଉନ୍ନତ କରି ତା'ର ମଥା ହେ ।
ମତେ କହ ମଣିଷକୁ କିଏ କାହିଁ ଲୁଟିନେଇ ମାରିଲ ।
ମତେ କହ ମଣିଷକୁ ଘାତ ସ୍ଥାନମାନ ଦଣ୍ଡ କିଏ କାହିଁ ଥୋଇଲା
କହ ମୋର କାନେ କାନେ ଦୁଃସହ ପୀଡ଼ା ବାଜ କାହାର
ମଣିଷ ହୋଇଛି ଉନପାଞ୍ଜିରୁ ବାହାର ।
ମଣିଷକୁ ଭଲପାଏ ମୁହିଁ ଭଲପାଏ ହେ
ଟିକି ନଖି ସବୁ ତାର ଜାଣିବାକୁ ଚାହେଁ ହେ ।

ମଣିଷ ଜୀବକୁ କିଏ ଶ୍ରେଷ୍ଠ କରି ଦେଖେରେ ?
ଏତେ ଅପରାଧ କିଏ ନିଜ ଶିରେ ଲେଖେରେ !
ମଣିଷର ଜୀବ ଆତ୍ମା ମଣିଷର ଜୀବ ସେ
ଏ ମାଟିର ସତ୍ୟ ଓ ଶିବ ସେ !
ମଣିଷଠୁ ଛିନ୍ନ ମୁଁ ହୋଇରେ
ପାରିବିନି ରହିବେ !
ମୋ ଭିତରେ ବାହାରେ
ମଣିଷ ଜୀବର ଲୀଳା ଲାଗିଅଛି ଚିରନ୍ତନ ସୀମାହୀନ ଶୋଭାରେ ।
ଏତେ ବଡ଼ ସମ୍ପଦ ମଣିଷ
ଚଉଦିଗେ ଅଛି ମୋର ଘେରିରେ
ବୁକୁତଳେ ତାର ମୁହିଁ
ଯିବି ଖେଳ ଖେଳିରେ ।
ଏ ଜୀବନ ମୋର ସତେ
କେଡ଼େ ଭଲ ଲଗିବ !
କେତେ ଅମୃତ ଶିଖା
ବୁକୁତଳେ ଜାଗିବ ।
ପୃଥିବୀର କେଉଁ କଣେ
କେତେ କେତେ ସମ୍ପଦ ଧରି କିଏ ରହିନ ।
ସବୁଏ ମୋ ସମ୍ପଦ ସବୁଏ ମୋ କୋଟିନିଧି ,
ଏ ବିରାଟ ଧରଣୀର ସବୁଏ ତ ଅମୃତ ବାହିନୀ ।



# ଝରରେ ରୁଧିର

ଅନନ୍ତ ପଟ୍ଟନାୟକ

ଝରରେ ଅଧୀର ହୃଦୟରୁ ରୁଧିର, ଝରରେ ଝର !
ଧାଉ ଶିରାବଣ ଝରଣୁ ବଳି ରୁ
ଭସାଇ ଦଅରେ ଧରଣୀ ତଳ,
ଝରରେ ରୁଧିର ଝରରେ ଝର ।

ଲୋଡ଼ା ନୁହେଁ ଆଜ ରୁଦ୍ଧ ମନର
ଦଗ୍ଧ ଶ୍ୱାସର କରୁଣ କଥା,
ଲୋଡ଼ା ନୁହେଁ ଆଜ ଅର୍ଘ୍ୟ ଦୀପାଳି,
ଶ୍ରୁ ନୟନର ସିକ୍ତ ପତା ।

ଗର୍ଭ ଭେଦ ଯେ ତାମସୀ ନିଶିର
ଆଣିଲା ନବୀନ ଜୀବନ-ସ୍ରୋତ,
ଲୋଡ଼େ ସେ ଆଜରେ ମୁକୁଳା ପ୍ରାଣର
ଶୋଣିତ ପଖଳା ପାଗଳ-ଗୀତ ।

ପଥେ ପଥେ ତାର ସଜାଇ ଦଅରେ
ହୃଦୟ କବାର ଛିନ୍ନ ଦଳ,
ଝରରେ ରୁଧିର ଝରରେ ଝର,
ଝରି ଯାଉ ଝରେ ଦୁଃଖ-ପ୍ରସରେ
ନୀରବ ଶୋଚନା, ନୟନ-ଜଳ ।

ମୃତ୍ୟୁର ଜଳେ ପହଁର ପହଁର
ଦେଖାଲେ ଯେ ତୋ ଲାଗି ରକ୍ତ ଝରି,
କୃଷ୍ଣ-ନାଗର ଦଂଶନେ ସେ କି
ଫଣିର ନଇଁରେ ପଡ଼ିବ ଲଇଁ ।

ଭୂଷାରେ ଭୂଷାରେ ଶସ୍ୟର ହ୍ରାସ
ନଗ୍ନ ଉଷାର ବକ୍ତ୍ର ପ୍ରଶ୍ୱାସ
ସ୍ୱପ୍ନ ବିହ୍ୱଳ ଫୁଟାଇଲା ଯେଉଁ
ଶିଳ୍ପୀ ସୃଜନୀ ତୂଳିକା ବନ୍ଧୁ,
ଭକ୍ତରେ ! ମୋର ହୃଦୟେ ଅଛୁ ତୁ,
ପଡ଼ିବ ନଇଁକି ପଡ଼ିବ ଲଇଁ ।
ପାଶୋର ଦେଶରେ କ୍ଷୁଦ୍ର ମମତା,
ବନ୍ଧ ଗୃହର ବନ୍ଦୀ ସ୍ୱର,
ଝରଣେ ରୁଧିର ଅଧୀରେ ଝର,
ଶୂନ୍ୟ ଯେତେରେ ସ୍ୱପ୍ନ କଳସୀ
ଉଚ୍ଛୁସି ଲସି ଭରରେ ଭର ।
ସନ୍ତ୍ରି ବନା ଯେ ବକ୍ଷୁଁ ନଗାଡ଼
ନିର୍ଗତ ମନେ ଦେଖୁଚ ଢାଳ
ଚନ୍ଦନ ଧୂପ ଲୋଡ଼ା କି ତାହାର,
ଲୋଡ଼ା ଯେ ତା ପାଶେ ରକ୍ତ ଢାଳ,
ଜୀର୍ଣ୍ଣ ଜୀବନେ ଯଉବନ ଦେଇ
ବନ୍ଧନ ଶତ ଯାଉଚ ଯେ ଫେଇ
ଅନ୍ଧାର ପଥେ ଅଗ୍ରଣୀ ଯେହୁ
ମୁକ୍ତି-ପ୍ରଦୀପ ଗର୍ବେ ଜାଳି;
ଝରରେ ରୁଧିର ଝରରେ ଝର,
ତାହାର ଲାଗି ତୁ ସପ୍ତ ସାଗର
କରରେ ଆକୁଳେ ଉଚ୍ଛଳ ।

ପୂରେ ପୂରେ ଯେତେ ବନ୍ଧ୍ୟା ଗିରିଙ୍କ
 ଚକ୍ଷୁ ଜୁଡ଼ାଲେ ମରୁତ ରଙ୍ଗ,
ତାହାର ଅସରା ସଉରଭ ଡୋର
 ଗଦ୍ ଗଦ୍ କଣ୍ଠେ ଯ'ଅରେ କହୁ ।
ମଳୟ ଆବେଶେ ମତ୍ତ ଦେହରେ ତରଳାଇ ଯେତେ
 ଅସୀମ କାଳର ଶୃଙ୍ଖଳା ଚଳ,
ଝରରେ ରୁଧିର ଝରରେ ଝର,
ମଲ୍ଲୀ ମରୁଆ ଖୋସାରେ ଖୋସାରେ
 ସଜାଇ ଶିମୁଳି-ପଳାଶ-ଦଳ ।
ଝର ଯା' ରକ୍ତ ମୋ, ଝର ଯା ପୁଲକେ,
 ଜନ୍ମଭୂମିର ଜୀବନ ପଥେ,
ଜଙ୍ଘିର ଶତ ଖସୁ ମୋ ଜାତର,
 ଚନ୍ଦ୍ରେ ସେ ମାଟରେ ସୃଜନ ରଥେ ।
ଶାନ୍ତ ଆମୋଦ ଆଶିଷ ଯେତେ
 ଶାଶ୍ୱତ ଶତ ସଖ୍ୟ ବଳ
ଝରରେ ରୁଧିର ଅଧୀରେ ଝର,
ଅଶ୍ରୁ ସାଗରେ ଅଗ୍ନି-ବାଣୀ ରୁ,
 ଅନ୍ତରେ ମୋର ଜଳରେ ଜଳ ।
ଧୂମର ବାଲୁର ବେଳାରେ ବେଳାରେ
 ଶସ୍ୟ-ସୁଷମା ଖେଳାରେ ଖେଳାରେ
ଝର ଯା' ଝରରେ ପ୍ରାଣର ଆଙ୍କରେ
 ପୋଛି ଦେଇ ମନୁ ଆପଣା ପର,
ଝରରେ ରୁଧିର ଝରରେ ଝର,
କରାଳ କାଳର କୃଷ୍ଣ କପୋଳେ
 ସ୍ୱପ୍ନ-ତାରକା ଝଲସେ ଝଲ ।

---

କା: ଚ: ୧—୮

# ଦୁଇଟି ତାହାର ଡେଣା

ରାଧାମୋହନ ଗଡ଼ନାୟକ

ଉପରେ ଉପରେ ଆଘାତ ହାଣୁଛି ଝଡ଼ଝଞ୍ଜାର ସେନା,
ଲୁବ୍ଧ ସେ ଏକ ଗୃଧ୍ର ଯେ ଆଜ ମେଲୁଛି ବସିଛି ଡେଣା
ନୂଆ ଦୁନିଆର ଦୂତ;
ଡେଣା ମେଲାଇଛି ଉଦ୍‌ବେଗେ ଉତ୍ସୁକ ।
ମାର୍କସ,
ଫ୍ରଏଡ଼,
ଦୁଇଟି ତାହାର ଡେଣା,
ଉପରେ ଉପରେ ଆଘାତ ହାଣୁଛି ଝଡ଼ଝଞ୍ଜାର ସେନା ।

ମାର୍କସ କହେ "ପୃଥିବୀର ନୂଆ ବେଦ,
ଦେବ ନାଆଁରେ ଧୂର୍ତ୍ତ ମଣିଷ ଆପଣା ଭିତରେ
ସୃଷ୍ଟି କରିଛି ଭେଦ
ବୁର୍ଜୁଆ ବସି ଆପଣାର ଘରକୋଣେ
ଗୁଣି ଦରସ
ତୃଷ୍ଣା-ବିବଶ
ଜନତାର ଲହୁ ଶୋଷେ
ଧନ-ମଜଦୂରେ ଯୋଡ଼ିଜାଲି ତାର ଚମଡ଼ା ଛଡ଼ାଇ ଧୂମେ
ଜଳର ମାଲିକ ଉଦ୍‌ଧଳୁଚ ସୃଜଇ ଗଗନ ଭୂମେ ।

ମାଟିର ମଣିଷ ରକ୍ତରେ ଜଳ ଢାଳ
ମାଟିର ସାଥିରେ ମାଟି କୋଡ଼ି ଚଷିକାଳ
ଶସ୍ୟ ଫଳାଏ,

ଶ୍ରମର ତାର ସେ ଫଳ—
ନିର୍ବିଘ୍ନରେ ଭୁଞ୍ଜିଲ ବସି ପଙ୍ଗପାଳର ଦଳ ।
ଅଭ୍ର-ପରଶା ମହଲରେ କିଏ ସ୍ୱପ୍ନ-ବିଳାସେ ଭାସେ,
କେତେ ଉପାସରେ ଲକ୍ଷ ମରଇ ଭଗ୍ନ-କୁଟୀର ବାସେ ।
'ଥିଲା' 'ନ ଥିଲା'ର ଶ୍ରେଣୀ-ସଂଗ୍ରାମ
ଘନାଇ ଉଠଇ ବଳେ,
ମଣିଷ-ସମାଜେ ଶ୍ରେଣୀର ଏ ଭେଦ
ବଢ଼ାଉ ଆଜି ଭବେ ।
ଶ୍ରେଣୀହୀନ ହେଉ ମଣିଷ-ସମାଜ,
ସାମ୍ୟର ଧାରା କାମ୍ୟ ଯେ ଆଜି
ସାରା ଦୁନିଆର ତଳେ !
ସବୁଙ୍କର ଏ ଅନ୍ନ ବସନ ଲଭୁ
ସୁଖ ଶାନ୍ତି ବି ପାଉ,
ମଣିଷ ଜାତିରୁ ଭେଦକୁ ପାଶୋରି ଯାଉ ।"

ଫୁଲେ ଫୁଲେ ଉଡ଼ଇ ଅଶ୍ଳୀଳ ସତନଠା—
ଭୁଲି ଯାଇ କାହିଁ କୁସୁମେ ଦେଖି ବର୍ଣ୍ଣ-ବିନୋଦ-ଶିଖା
ବଣ୍ଟିଛି ଅଛୁ କୁସୁମର ସାରା ମହାର ଭରାଇ ଚର,
ଦେଖି ନାହିଁ ରୁଚି, ସଂସ୍କୃତି, ସଭ୍ୟତା,
ଲୋକ ଯାଇଅଛୁ ଅଜଦେଖା ଅଜଣା ଦେଶ,
ମଣିଷର ଅବଚେତନ ତଳୁ
ଝଭୁଡି ପରିବେଶ ।

"ମଣିଷ ଯେ ସଦା କର୍ମ ସାଧନା
ଖାଲି ନାହିଁ କଳନା କରେ,
ଯୌନ ଲାଳସା ଭରି ରହିଅଛୁ
ମନେ ମନେ ତାର ତଳେ ।

କୃଷକ ଜନନୀ ପୂର୍ଣ୍ଣ ଦୁହିତା ଏକ ଅନେ ଭଲ୍ ପାଏ,
ଭଲ୍ ପାଇବାର ମର୍ମେ ମର୍ମେ ତାହାର ଗନ୍ଧ ଥାଏ ।
ଶିଳ୍ପୀର କଳା କବିର କବିତା
ଗାୟକର ଗୀତ ଗାନେ,
କର୍ମଶୀଳର କର୍ମ-ବ୍ରତାନେ,
ସାଧକର ଅଭିଯାନେ
ଜଡର ପ୍ରେରଣା ବିଜୟ-ଗୀତିକା ଗାଏ ।"

ସୁବର୍ଣ୍ଣା ପୃଥ୍ୱୀ ହସେଇ ଯାଇଚ ଯଥା ସ୍ୱର୍ଗର ମେନା
ସ୍ୱଗର ଅଭିମୂଖେ,
ଲୁବ୍ଧ ସେ ଏକ ଦୃଷ୍ଟି ଯେ ଆଙ୍କ·ମେଲ୍ଲଇ ଦହିଁଚ ତେଣା
ନୂଆ ଦୁନିଆ ବୁକେ
ଦେଖ ସେ ତେଣା·ର ତଳେ,
ଯାପ୍ତ ଲୁଚର ଶକୁନ୍ତଳାର ଅଶ୍ରୁକ ଆହ୍ୱା ଢଳେ ।



# ବୀର ଜନନୀ

ଡଃ କୁଞ୍ଜବିହାରୀ ଦାସ

ସଂଗ୍ରାମୁ ଫେରି ଜନନୀ ଚରଣେ ବନ୍ଦିଲା ସଞ୍ଜୟ,
ବିଦୁଳା ପୁଚ୍ଛେ, 'କି ହୋଇଛୁ କହ ବିଜୟ କି ପରାଜୟ ?
ବକ୍ଷ ବେଦନା ଅଗାଢ଼ ଅରତ ବ୍ୟାକୁଳ ଲୋତକଧାରେ—
ନୟନେ ନିଦ୍ରା ନଥିଲା, ଚାହିଁଛୁ ବସି ଏ ବିଜନ ଦ୍ୱାରେ
ସଂଗ୍ରାମ ଲାଗି ହସ୍ତେ ତୋହର ଦେଇଥିଲି ତରବାରି,
ଦେଇଥିଲି ମୋର ଅନ୍ତର ତନ୍ତୁ ଗର୍ଭର ଆଶିଷ ଢାଳି ।
ସଂଗ୍ରାମେ ଯୁଝି ବୁଝେନା ତଥାପି ବୁଝେନା ଜନନୀ ମନ,
ଶୂନ୍ୟରୁ କିବା ଶୂନ୍ୟତର ମୁଁ ଅନୁଭବେଁ ହୃଦେ ମମ ।
ଏକ ପୁତ୍ରର ଜନନୀ ଜୀବନ ଜୀବନ ନୁହଇ ଆରେ,
ଜୀର୍ଣ୍ଣ ନଉକା ସମ ଭାସୁଥାଏ ଲୁପ୍ତ ଲୋତକଧାରେ ।
ମହାଶଙ୍କାର ବିଭାସ ଚାହାର ହତାଶ ବକ୍ଷେ ବାଜେ,
ସ୍ତବ୍ଧକୂଳ ଏକ ବଜ୍ର ନିନାଦେ ହାହାକାର ଗୀତେ ସାଜେ ।
ଜୀବନୁ ଜୀବନ— ସମ୍ମାନ ବଡ଼, ସେଇ ଲକ୍ଷ୍ୟ ମୋ ଲକ୍ଷ୍ୟ,
ବିଜୟୀ କି ଆଜ ମହା ସଂଗ୍ରାମେ କହ, କହ ସଞ୍ଜୟ !'

ମଉଳି ମଧୁରେ ଛୁଡ଼ା ସଞ୍ଜୟ ନୋଇଁ ଦୁର୍ବଳ ମଥା,
ଅଣା ଉତ୍ସାହ ଯାଇଅଛୁ ନଭି, ମୁଖେ ନାହିଁ ପଦେ କଥା ।
ଗରବେ ଗରଜେ ଧିକ୍କାରେ, ଝରୁ ମଳିନ ଅଶ୍ରୁକଣା,
ଘୋଷେ ପରାଜୟ ! ବିଦୁଲା-ନୟନେ ଅଗ୍ନି ହୋଇଲା ଜମା ।
ଗର୍ଜି କହିଲ, 'କାନ୍ଦୁରେ ମୂଢ଼, ନାରୀସମ ଲୁଚୁପାସେ,
ଶୌର୍ଯ୍ୟ ବୀର୍ଯ୍ୟ ନାହିଁ ଯହିଁ ସେହି ଦେହ ମୃତ୍ତିକା ଗ୍ରାସେ ।

ମୋହର ରକ୍ତ ମାଂସେ ଗଢ଼ା କି ଏଇ କାପୁରୁଷ ଦେହ ?
ଧିକ୍ ଧିକ୍ ମାଟି— ପିଣ୍ଡୁଳା ପରେ ଢାଳିଥିଲି ମୋର ସ୍ନେହ ।
ବଜ୍ରେ ତୋର ମନ ଗଢ଼ିଥିଲି ବିପ୍ଳବ ଗୀତ ଗାଇ,
ଧିକ୍ ଧିକ୍ ଦେଲୁ ଧୂମ ଉତ୍ସରେ ବନ୍ଦନ ମୋହର ଗୁଣ୍ଡ ।
ଅକ୍ଷତ ଦେହେ ପରାଜୟ ବାର— ମ୍ଳାନତମ ପଶ୍ଚାତ୍ୟ,
ଏକ ହାତେ ସେ ଯେ ଧରାଇ ମୁଖ ଆନ ହାତେ ଧରେ ଜୟ ।
ସୁଖ ହୋଇ ଯା ଅପଯଶ ଫଣା ବକ୍ଷେ କଲୁ ମୋ ଘାତ,
କନ୍ୟା ହେଲେ ତ ନ ଥିଲାରେ ଏଇ ଲଜ୍ଜାର ହୃତ୍‌ପାତ ।
ଦୂର୍ ହୁଅ ଆଗୁ ଜନନୀ ସ୍ୱର୍ଗ ଭସାଇଦିଏ ମୁଁ ଲୁହେ,
ସଞ୍ଜୁ ମୋର ସନ୍ତାନ ନୁହେଁ, ସନ୍ତାନ ନୁହେଁ, ନୁହେଁ ।

ଦାବାନଳ ସମ ଜଳି ଉଠି ବୀର ମିଶିଲି ଅନ୍ଧକାରେ,
ବଜ୍ର ସମ ଗଗନ ବିଦାରି ହୁଙ୍କାରି କରବାଳେ ।

—:*:—

(ନବମାଳିକା)

# ଆଜିର ଭାରତ

ସଚ୍ଚିଦାନନ୍ଦ ରାଉତରାୟ

ନୁହେଁ ବନ୍ଧୁ, ନୁହେଁ ଏହା ଚିତା,
ଏ ଦେଶ ଭୂମିର ତଳେ
ଏ ଅଲକ୍ଷ୍ୟ ମୁକତି-ସଙ୍କେତା ।

ନୁହେଁ ଏହା ଜଳିଯିବା ପାଇଁ,
ଏହାର ଜନମ ଏଥି ଜାଳି ପୋଡ଼ି
ଦବାକୁ ଧସାଇ ॥

ଭସ୍ମ ସ ପାଚର ଘେର
ଏ ଅଂଧାର ଅମୁହାଁ ଦେଉଳେ—
ପ୍ରେତାତ୍ମିତ ଅଂଧ ଗ୍ରନ୍ଥ
ମଥାପିଟେ ଯାର ବେଦ ମୂଳେ—

ଏ ତାହାର ଶେଷ ଉପାସନ;
ସଂଜର ତୁଳସୀ ମୂଳେ
ପ୍ରଦୀପର କରୁଣ ବେଦନ,

ଜଳ ଉଠି କ୍ଷଣିକ ପ୍ରକାଶେ
ସାର୍ଥକ କରଇ ଯଥା 'ଚିରଂତନେ'
ନଂଦ ଉପନ୍ୟାସେ,
ସେହିପରି ତାହା
ସଂକ୍ଷିପ୍ତ ଜୀବନ ଦେଇ ଜୀବନର ଅତିରିକ୍ତ ଯାହା—

ଗର୍ଭେ ତାର ହୋଇଛୁ ଜନମ,
ତାହାର ବନ୍ଦନା କରେ ଆନୁଷ୍ଠାନ
ଶିଖା ପ୍ରିୟତମ ॥

ଏ ଶିକ୍ଷା ଦେଇଛ ଆଜ
ଇତିହାସେ ହୋଇ ଟେକ ଦାନ
ଶତାବ୍ଦୀର ଶ୍ରେଷ୍ଠ ଫୁଲ,
ମୁକୁଳିତ 'ମୁଖସ୍ଥାନ' ପ୍ରାଣ ॥

କରନ୍ତୁ ଏ ଜନତାକୁ ଦେଇଛ ଏ
ତାହାର ସ୍କୁଲକ
କ୍ଷୁଦ୍ର ଏକ ନାହୁର ବାଳକ
ବାହୁବାକୁ ଏ ଦେଶର ତଶ୍ମ,

ଉଡ଼ନାଇ ଘାଟେ ନାଆ
ନାହୁରଆ ପାରେ କରେ ମୁଣ୍ଡ ?
ଆଜ ତାର ବାଣୀ
ଶୀତଳ ଧମନ୍ୟ ତଳେ ପଠାଇଛ ଅପୂର୍ବ ଆହ୍ୱାନ ॥

ଜ୍ୱଳଂତ ଏ ଲେଲିହାନ, ସ୍ୱାହାସ୍ମନ ଶିଖାର ଅନଳେ
ଜୀବନର ମାଳ୍ପ ଅରେ, ମରଣର ସ୍ନବୁ ସ୍ପନ୍ଦରେ
ରଚିବାକୁ ସୃଷ୍ଟିର ଭୂମିକା;
ଭ୍ରଷାର ଗୋପନ ଅର୍ଥ ରଜନୀର ଲୁପ୍ତ ପାଦଟୀକା
ଉଦ୍ଧେ ଯଥା ଧରି,
ଆପଣା ମୁଖରେ ଫୁଟେ ଆଜ ସେତ ଝଁଶ ସେଇପରି ॥

ପଛୁ କଏ ଡାକୁଚ ଭୁହାଇ
ଭନ୍ଦ ରନ୍ଦ ଆରେ ଶିଶୁ ,
ଛଡ଼ା ଦୁଅ ବାରେ, ଯାଅ ନାଇ ।

ଅଛି ଝଡ଼, ଅଛି ରଜା,
ଅଛି ପୁଣି ରଜାର ସଇନ,
ଗରଜୁଛି କଳା ମେଘ, ଝଡ଼ ରଥ,
ହେଉ ନାଇ ଦିନ ।

ଫୁଲି ଫୁଲି ନାଚେ ନଈ ପାଣି,
ଅଂଧାରରେ ଖାଲ, ବିଲ କିଛିଇ ତ
ହେଉ ନାଇ ଜାଣି ।

ଖାଲବିଲୁ ମହାବଳ ରହି
ଲମ୍ଫି ଆସେ ବଣ, ବିଲେ ଖେଳାଇ ଯେ ଉପ୍ପର ନହଡ଼ ॥

ଉଲ୍ଲୁକର ଆରଣ୍ୟ ନିଃଶ୍ୱାସ
ଆର୍ଦ୍ର କରେ ପାହାଡ଼ର ଶିଳାମୟ ଅଙ୍ଗେସ୍ୱ ବିଶ୍ୱାସ ।

ଛଡ଼'ହୁଅ, ଅଛି ଆରେ ରଣ
ସମ୍ମୁଖର ଯାତ୍ରା-ପଥେ ଶୁଣ ପଛୁ ବରୁଣ ଅହ୍ୱାନ,

ଏଭଳି ସେ 'ଅମାନିଆ ପିଲା'
ଫଇଜର ଗୁଳି, ଗୁଳା, ରଜା, ଝଡ଼ କିଛି ନ ମାନିଲା ।

ଧୂଳି ଖେଳ ଗୁଣ୍ଡି
ଗୁଳି ଆଗେ ଜୀବନକୁ ହସି ହସି ଦେଲା ସିନା ବାଡ଼ି ॥

ଝଡ଼ଠାରୁ ସେ ଯେ ବଡ଼
ମେଘଠାରୁ ଆହୁରି ସେ କଳା,
ସ୍ୱାନ ଦେହେ ଖେଳେ ତାର
ଜୀବନର ଅଲିଭା ଚପଳା ।

ଗୁଢ ପଣ ହୁଏ ବାନ୍ଧବଣା
ପଥ ଭୁଲି ଏଣେ ତେଣେ ହୋଇଯାଏ
ସେ ପଗ୍ର ଝରଣା ॥

ଲୋଟ ପୁଣି ଏଡ଼େ ସେ ଖଗ୍ରଟ !
ଜୀବନ ପାରିଲା ନାଇ ରଖି ତାକୁ,
ମୃତ୍ୟୁ ତାରେ ଛୁଡ଼ିଦେଲା ବାଟ ।

ଲୁହାର ଫଳକ ଗଲେ ଫାଟି,
ମାଟିର କଂକାଳ ସେ ଯେ ଭାଙ୍ଗି ଗଲା ?
ମାଟି ଖାଏ ମାଟି !!



# ବିପ୍ଳବ ମରିନାହିଁ

ଲକ୍ଷ୍ମୀଧର ନାୟକ

କେହି ଜଣେ କହୁ ...
ଶୋଷିତର ସର୍ବସ୍ୱ ଏଇ ସ୍ୱାଧୀନତା
ଆମକୁ କୋଉଠି ନେଇ ଛିଡ଼ା କରେଇଛି ?
ଗଣତନ୍ତ୍ର ନାମେ ଆଜ ଅମଲାତନ୍ତ୍ରୀର ନିର୍ଲଜ ଶାସନ
ଲାଠି ଗୁଳି ଚଳେଇଛି ନିର୍ବିବାଦେ, ମନଇଚ୍ଛା ସବୁ କହୁ ।

'ଶାନ୍ତି'ର ମୁଁ ବୁଝେଁ କ'ଣ ?
ମୁଁ କ'ଣ ଯୁଦ୍ଧ କଲି, ରକ୍ତ ଦେଲି, ମୃତ୍ୟୁର ବାଢ଼ିଲି ?
ଆଖିରେ ଯେ ମୃତ୍ୟୁକୁ ଦେଖିନ,
ଶାନ୍ତି ସେ ବୁଝିବ କ'ଣ ?

ଲଢ଼ି ଲଢ଼ି ମରୁ ମରୁ ଯା' ପ୍ରାଣଟା ହୋଇନ ଶିକାର
ଆହତ, ମୂର୍ଚ୍ଛିତ, କ୍ଷତ, ଜର୍ଜର ଅନ୍ଧାରେ
କାନ୍ଧରେ ବନ୍ଧୁକ ଧରି,
ଶୀତତାପ ନିୟନ୍ତ୍ରିତ କୋଠରି ଭିତରେ
କଳାବଜାରୀ ଝଙ୍କାରେ ସେଣ୍ଟ କିଣି ।

ଯେଉଁମାନେ ଖେଳୁଛନ୍ତି ଜୁଆ,
ସେମାନଙ୍କୁ ଘାଏଲ୍ କରିନ,
ଜେଲ୍‌କୁ ଯାଇନ ଯିଏ,
ନଖାଇ ମରିନ ଯା'ର ସ୍ତ୍ରୀ ପିଲାଛୁଆ,
'ଶାନ୍ତି' ସେ ବୁଝିବ କ'ଣ ?

ଆଜିର ଏ ସ୍ୱାଧୀନତା ମୋ' ପାଖରେ ମୂଲ୍ୟହୀନ, ପ୍ରହସନ ।
ଢେଣ୍ଟା ବି ମୋ' ମତରେ ସେଇ କେତେକଙ୍କର
ଯେଉଁମାନେ ଥରେ କେବେ ଜେଲ୍ ଯାଇଥିଲେ ବୋଲି
ଗର୍ବ ଅହଙ୍କାର ।

ସେମାନଙ୍କ ଅତ୍ୟାଚାର ସହିବାକୁ ହେବ ।
ବ୍ରିଟିଶ୍ ଗୋଲାମ ଥିଲି,
ଏବେ ହେଲି କ୍ଷେଟକଣାଳ ମହାନ୍ ନେତାର ।

ଫରକଟା କ'ଣ ?
ଇଂରେଜଙ୍କୁ ଡରୁଥିଲି, ମନ୍ତ୍ରୀକୁ ଡରୁଛି
ସମ୍ମାନ କରୁଛି କିଏ ? ଥାଳି ଭେଟି, ପୂଜା ପୂଜି ...

ସେ ତ କେତେଜଣ ଦଲାଲଙ୍କ ବ୍ୟବସା' ...
ଗାନ୍ଧି କ'ଣ ଘୁସ୍ ନେଉଥିଲେ ?
ଦେଶର ନେତୃତ୍ୱ କ'ଣ ଆଜି ?
ଶାସନ, ଶୃଙ୍ଖଳା, ଶାନ୍ତି ସବୁ ଖଜପଟେ, ଖଜପଟେ ।

ମୁଁ ଭାବୁଛି, ...
ଯୁଦ୍ଧ କରି ବ୍ରିଟିଶ୍ ସାଥିରେ,
ଆମେ ଯଦି ମରିଥାନ୍ତୁ, ଆଣିଥାନ୍ତୁ ସ୍ୱାଧୀନତା,
ତା' ହେଲେ ଏଇ ଯେ ଦଳେ ଟୁଲମୁଣ୍ଡିଧାରୀ

ପ୍ରପିତାମହର ନାତି ଅଣନାତି ସବେ,
ଡାଇନେଷ୍ଟି ଗଢ଼ି ଗଢ଼ି ଚଳାନ୍ତି ସଲ୍ତନତ,
ସେମାନେ ନଥାନ୍ତେ କେହି,
ଥିଥାନ୍ତା ମୃତ୍ୟୁଦୂତ, ଦୁର୍ଦ୍ଦାନ୍ତ ଶିକାରୀ ।

ବିପ୍ଳବ ସର ନାହିଁ, ବିପ୍ଳବ ମରନାହିଁ ।
ହୁଏତ ବିପ୍ଳବ ରଗଣ ।
ତାକୁ ପୁଣି ସଂଜୀବିତ କରିବାକୁ ହେବ ।
ଏଥରକ ଲକ୍ଷ୍ୟ ନୁହେଁ, ନୁହେଁ ସେ ବ୍ରିଟିଶ,
ତାଆଠୁ ନକଲ କରା ଏଇ ଡିମୋକ୍ରେସି ।
ଆଜି ଯିଏ ଆମ ଆଗେ ଆସି ଛିଡ଼ାହେବ, ବାଧା ଦେବ ॥

—o—

# ଭଡ଼ାଘର

ବିନୋଦଚନ୍ଦ୍ର ନାୟକ

ପରିତ୍ୟକ୍ତ ଗୃହସ୍ଥଳୀ—ଏ ଏକ ଶ୍ମଶାନ
ଏକଦା ଜନମୁଖର ଏ ଦୁଆର ଦର୍ଜା
(କିନ୍ତୁ ସବୁ ଖୋଲା ପଡ଼ା
ମାଲିକ ନାହାନ୍ତି ଆମେନ୍ ?)
ସବୁ ଶୂନଶାନ୍ ।

ଲୁହ ଲୁହ ପାଦର ମାପର
ଦୂଲପଙ୍କ କ୍ୟାନ୍‌ଭାସ ଜୋତା
ଅଧଭଜ ନେଲନ୍ ରଙ୍ଗର
ତୈଳମ୍ଲାନ ଚଦରର ଫିତା ।

ସେଠାଏ ଅଜଣା ବାଳ ସ୍ତ୍ରୀ ପଣ କୃଷ୍ଣ ଦୃଷ୍ଟି
ସ୍ଥିତେ ଅଧେ ନାଲି ବାଳ ପିଣ୍ଡି
ଗଢାଏ ଜଂଜାଳ । କାହାର ଅଲମାରି ଉଚ୍ଚେ,
ଖାଲି ତ-ଜମ କ୍ଷେତ୍ର ଇଷ୍ଟାମ୍ପିନ୍ ଶିଶି ।

ସିନେମାର ଝିଲ୍ଲାଣୀ ମୂର୍ତ୍ତି
ଛିନ୍ନ ଖଣ୍ଡ କେତେ
ହିନ୍ଦୁସ୍ଥିତ କବର୍ଣ୍ଣ୍ୟର ଭଗ୍ନତ୍ରୁଟ୍ୟ ମୁଖର ଜାଦର
ଏକ ଅଧ୍ୟାୟର
ଟୁକୁରା ଟୁକୁରା ଅଂଶ ଇତସ୍ତତଃ ଏଥେ ।

ଏଥେ ବସି ଏ ସ୍ୱର୍ଗର ଯୋଡେଁ ସ୍ୱର୍ଗସେତୁ
ଗଣି ଚନ୍ଦ ରବି ବୃହସ୍ପତି ଚନ୍ଦ୍ର କେତୁ
ମଧ୍ୟେ ବନ୍ଦେ ଜୀବନର ମୋର ଇଗ୍ୱଦତ୍ତ
ଫଙ୍କେସ୍ରୋତ ।

ଅନ୍ଧେବୁଝି ମୂର୍ଖ ଆତ୍ମରତ
ମଧ୍ୟେ ମଗ୍ନ ଉଡ଼େ ହଟେ ମୋ ସ୍ୱପ୍ନର ସୁନେଲି ଈଗଲ
ରୌଦ୍ରେ ରୌଦେ ଜଳୁଛ ଚଞ୍ଚଳ ।
ତଥାପି ଏ ବାଞ୍ଛାର ହଙ୍ଗା ପଲ୍ଲସ୍ତ୍ର—
ତ୍ରିଭେଲେ ଫେରେ ମନ,

ଫେରିଯାଏଁ ସେ ଜଞ୍ଜାଳସ୍ତୂପେ
ଏକ ସୁନ୍ଦରୀ ସଂସାର ରଚେ ଯହିଁ
ବୃଦ୍ଧାଙ୍ଗୁଷ୍ଠ ଟିପର ଅଙ୍କନ
ନାନା ଛନ୍ଦେ ରୂପେ ।



# ଗହମ କ୍ଷେତର ସ୍ମୃତି

ଗୋପାଳ ଚନ୍ଦ୍ର ମିଶ୍ର

ଉତ୍ତର ପ୍ରଦେଶ ଗହମ କ୍ଷେତର କିଏ
ଗହମ କ୍ଷେତରେ ଗାଇ ବୁଲୁଥିଲା ଗୀତ
ପ୍ରଥମ ଥର ମୁଁ ଦେଖିଥିଲି ଯେଉଁ ଦିନ
ଗହମ କେଣ୍ଡାରେ ଧରି ଆସିଥିଲା ଶୀତ ।

ଦିଲ୍ଲୀରୁ ଦିନେ ଡାକଗାଡ଼ି ଧାଉଁଥାଏ
ଡାକଗାଡ଼ି ବୁକେ ଯାତ୍ରୀ ଫେରଇ ଦେଶେ
ଉତ୍ତର ପ୍ରଦେଶ ଗହମ କ୍ଷେତରେ କେତେ
କୃଷୀ ବୁଲୁଥିଲେ ପୂର୍ଣ୍ଣ ଫସଲ ଆଶେ ।

ଦୁଇ ପାର୍ଶ୍ୱରେ ଶୋଇ ପଡ଼ିଥିଲା କାହିଁ
ଗହମ କ୍ଷେତର ଲମ୍ବକୁଳୀ ନୀଳବେଣୀ
ରେଲ୍ ଲାଇନର ଦୁଇ ପାର୍ଶ୍ୱରେ ଠିଆ
ତାର-ଖୁଣ୍ଟିରେ ବିଳାସ ରଚଇ ବଣି ।

ସାପପରି ଯେଉଁ ରେଲ ଲାଇନର ରେଖା
ତାପରେ ଚାଲିଛି ଚଞ୍ଚଳ ଡାକଗାଡ଼ି
ମନ ପବନର ଉଡ଼ନ୍ତା ରଥରେ କିବା
ଆସିଥିଲି ବୁଲି ଯାଏ ଏବେ ସବୁ ଛାଡ଼ି ।

ଗଙ୍ଗା ଯେଉଁଠି ପଡ଼ିଅଛି ବାଲିଶେଯେ
ଖରବଦନ ତାର ଗର୍ଭିଣୀ ଗୋରୀ ପରି
ଯମୁନା ଯେଉଁଠି ଡାକଗାଡ଼ି ବାଟ ଜଗେ
ଶଙ୍ଖ ଝିଣ୍ଟିକ ବାଲି ଗିରଡ଼ାରେ ଝରି ।

ନାମସ୍ଥନ କେଉଁ ନାଳ ଢଏ ଅବରୋଧ
ଡାକଗାଡ଼ି ଧାଏ ଦଳଦେଇ ବାଧାଘେଣେ
ସେଇ ଡାକଗାଡ଼ି ଯାତ୍ରୀ ଗଣେଇ ବସି
କେତେ ଜନଗିର ସବୁଜ ରଙ୍ଗଇ ମନେ ।

ନୀଳକଣ୍ଠର ଜଟିଳ ଜଟାର ସମ
ଦୁଇ ପାର୍ଶ୍ୱରେ ଶୋଇଚି ଗହମ କ୍ଷେତ
ସ୍ୱପ୍ନୀର ବାଳିକା ଜଗିଛି ଗହମ ବାଡ଼
ମନ ଉଦାସରେ ଗାଏ ସେ ଅଜ୍ଞାତ ଗୀତ ।

ନୀରବ ନଅଡ଼ ଗହମ କ୍ଷେତରେ ସେ ଯେ
ସ୍ୱପ୍ନୀର ବାଳିକା ମୁକୁଳା ତାହାର କେଶ
ଡର ନାହିଁ ତାର ଭୟ ନାହିଁ ତାର ମନେ
ଆତ୍ମା ସେ ଏପରି ଗହମ କ୍ଷେତର ଦେଶ ।

ବେଣୀରେ ତାହାର ଗହମ କେଣ୍ଡା ସାଜେ
ପାଣି ପବନରେ ପ୍ରକୃତି ଗଢ଼େ ଦେହ ।

ଗହମ କ୍ଷେତରେ ଜଗୁଆଳି ସେତ୍ତ ଥାଏ
ଅଳସ ବେଳାରେ ଉଦାସ ମନର ଭବେ
ସ୍ୱପ୍ନୀ ଦଳ ଦଳ ଯାଆନ୍ତି ସେ ପଥ ବାଟେ
ପଦ ଚହ୍ନଟି ପଡ଼ି ରହେ ଠାବେ ଠାବେ ।

ଫେରୁଥିଲି ମୁହିଁ ଉତ୍ତର ପ୍ରଦେଶଠାରୁ
ହିମାଳୟ ତଳ-ସୈନ୍ୟ ଶିବିରୁ ଦିନେ
ଡାକଗାଡ଼ି ପଥ ଦୁଇ ପାର୍ଶ୍ୱରେ କାହିଁ
ଗହମ କ୍ଷେତର ସମ୍ଭାର ଜାଗେ ମନେ ।

କିବା ଡାକଗାଡ଼ି ଦାନବଗ୍ରଢ ଧାଇଁଅଛୁ
ନଗେଲା ଗ୍ରଡରେ ଚନ୍ଦ୍ର ବୃନ୍ଦେ ତା ଖଣ୍ଡ
ଗହମ କ୍ଷେତର ହୁଇଲା ପେନ୍ଥା ତୁଳେ
ଲକ୍ଷି ରହେ କାଣ୍ଡି ରସିକା ଚନ୍ଦ୍ରାବତୀ ।

ଗହମ କ୍ଷେତରେ ଏକ୍ସପର୍ଟ ଗୃଷୀଦଳ
ଏକ୍ସପର୍ଟ୍ କେତେ ସୁକୁମାରୀ ଗୃଷୀ ଝିଅ,
ଲକ୍ଷ ଲକ୍ଷ ଦେଇ ଫସଲ୍ ଫଳାଉଥିବେ
ଡାକଗାଡ଼ି ଲୋକେ ଲୁଣ୍ଠିକଣ କାହିଁ ନିଅ—

ସୁନା ଫସଲରେ ଦାଆ ଓ କୋଦାଳ ଲାଗେ
ଗହମ କ୍ଷେତରେ ବହିଯିବଲେ କ୍ଷୀର ନଦୀ
ଉତ୍ପାଦନରେ ସମ୍ମୃଦ୍ଧି ଧାରା ବହେ
ଏ କଥା ବୁଝିଁ କି କବି ଓ ଲେଖକ ଆଦି ?

ଆମର ଜୀବନେ ପ୍ରତି ଲଗନରେ କାହିଁ
କେତେ କେତେ ଶ୍ରେଷ୍ଠ ଘଟଣା ଘଟଇ ସତେ
ହିନ୍ଦୁଠାରୁ ଆହା ଉତ୍ତର ପ୍ରଦେଶ କ୍ଷେତ—
ନଗୁଆଲି ଝିଅ ବସିଛନ୍ତି କାଳି ମତେ ।



# ଆମକୁ ଫେରାଇ ଦିଅ

ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)

ଆମକୁ ଫେରାଇ ଦିଅ ବଂଚିବାର ଅଧିକାର
ଜୀବନ ପୀଡ଼ିତ ଯେବେ ଈର୍ଷାର ଦୁର୍ବହ ସ୍ତୂପରେ
ହୃଦୟ ହଜନ୍ତି ଯେବେ ବଜା କଣା କୋଳାହଳ ତଳେ
କାଞ୍ଚନ କାମନା ସାଥ, ପ୍ରୀତି ତୁଚ୍ଛ ଜୀବନର ପ୍ରତିଯୋଗିତାରେ ।

ରମ୍ୟକଳା କୋଣାର୍କରେ ଢାଙ୍କିଅଛି ଶୀତର ରଜନୀ
କବିତାର ସ୍ଥାନ କାହିଁ ଅବସନ୍ନ ଏ ଜୀବନେ
ସମାଧାନ ହୁଏ ନାହିଁ ଶ୍ଳେଷ ବାକ୍ୟ, ରାଜନୀତି ଶାବ୍ଦ ହତ୍ୟାପରେ
ଲୁଟିହୁଏ ନାହିଁ ଆଜ ରାଷ୍ଟ୍ରଟୋପି ଦାଢ଼ି ଅବା ହାତୁଡ଼ିର ମାନେ ।

କାହିଁ ବା ସେ ତପୋବନ, କାହିଁ ବା ସେ ପଲ୍ଲୀ ରମଣୀୟ
କାହିଁ ବା ସେ ସହୃଦୟ ଯେ ଲୁଟିବ କାବ୍ୟର ମାଧୁରୀ
ଅବେକର ପ୍ରକାଶଟା ଅଜକାଲି ନହ୍ଲାତ ଅଚଳ
ଏବେ ଅମେ ସ୍ୱବଚନ୍ତ୍ର ହସୁ କାନ୍ଦୁ ଯନ୍ତ୍ରପର କାମ ଯାହ କରି ।

କହିତା କପୋତ ଏଣୁ ହୁଏ ନାହିଁ ଧସି ଆସି
ଅପେ ଆପେ ମନର ପ୍ରାନ୍ତରେ
ଜୀବନର ଜୟଗୀତ କଣର ଗାଇବୁ କହ
ନାମେ ତାର ଖ୍ୟାତ ଯେ ସଂଚରେ ।

ସପନରେ ବିଚରଣ ଏବେ ତେଣୁ ମତ୍ତତା କେବଳ
ବସ୍ତୁବାଦର ବିଷମତା, ପୀଡ଼ିତର ଅଶ୍ରୁଧାର ଦେଖୁ
ନୀତି ନାମେ ଦୁର୍ନୀତିର ଜୟଯାତ୍ରା ନିତି ନିତି ଦେଖି
କବିତାର ନାମେ ତେଣୁ ଏବେ ଆମେ ପ୍ରତିବାଦ ଅଭିଯୋଗ ଲେଖୁ ।

ଆମକୁ ଦେଇଛି ଭୟ ମୋହମୁକ୍ତ ମନର ସଂଶୟ
ସଂଗଠନ ସୌକୁମାର୍ଯ୍ୟ, ଅନ୍ଲମ୍ଫନ ଧରାର ହୃଦୟେ
ପ୍ରୀତିସ୍ନିଗ୍ଧ ସହଜ ସରଳ ପ୍ରାଣ ହୃଦୟ-ରଞ୍ଜନ
ଏ ଧରଣୀ ହେବ ରମ୍ୟ ଏ ଜୀବନ ପାବନ-ପରଶେ ।

ଏ ପୃଥିବୀ ଏତେ ବଡ଼, ଏତେ ପୁଣି ଶ୍ରେଷ୍ଠ ହୋଇଯାଏ
ସଂପଦ-ପ୍ରାଚୁର୍ଯ୍ୟ ପୁଣି ବିଜ୍ଞାନର ଉଚ୍ଚପଦ ଆଶ୍ରୟ ଲଭିଲେ
ଏହାରି ମଝିରେ ପୁଣି ଏତେ ଦୁଃଖ, ଏତେ ସୁଖ ଏତେ ହିଂସା ଲୋଭ
ଏ ଧରାର ଏତେ ମାୟା···ଏତେ ରୂପ ସେ କି ଭୁଲି ହୁଏ ?

ଆହୁରି ସୁନ୍ଦର ହେବ ଏ ପ୍ରାଚୀନ ପୃଥିବୀ ଆମର·
ଆହୁରି ସହଜ ପୁଣି ଉଦ୍ବେଗହୀନ ହେବ ଏ ମଣିଷର ଜୀବନ ଯାପନ
ଆହୁରି ଫୁଟିବ ହସ ଫୁଲସମ ଜୀବନ ବୃନ୍ତରେ
ଦୂର ହେବ ଚିତ୍ତର ସଂଶୟ, ସ୍ୱଚ୍ଛ ହେବ ଅନ୍ତର କାନନ ।

ନୂତନ ଶପଥ ଫୁଟେ ମୁକ୍ତ ହୋଇ ଜନତାର କଣ୍ଠେ
ହରଫୁଲ ସଂଗୀତ ଦରଦୀ ଗାଏ ମୁଁହି ନୂତନ ଚୌପଦୀ
ଏ ଧରଣୀ ଧନ୍ୟ ହେବ ଆମ ସ୍ୱେଦ, ପ୍ରଜ୍ଞାର ପ୍ରସାଦେ
କରୁଣାର ନୀରଧାର ଢାଳିଦିବ ଜୀବନର ନଦୀ ।

ସମର-ବିମୁଖ ଆମେ ଶାନ୍ତିକାମୀ ମୈତ୍ରୀର ସାଧକ
ମାରଣାସ୍ତ୍ରୁ ଶ୍ରେୟ ମଣୁ ଜନତାର କୁସୁମ ସାୟକ ।



# ସାର୍

## ବେଣୁଧର ରାଉତ

ସାର୍ ଯେବେ କହୁଥିଲେ କ୍ଲାସରେ ବାଲିର ଏକଥା,—
(ପୂର୍ବାପର ମନେ ନାହିଁ)—ଆବେଗ ଓ ଇତିହାସ ମିଶା ଅଧା ଅଧା,—
ସୁନାର ଫସଲ କଥା ଧରାର ଏ ସ୍ୱର୍ଗିକ ମାଟିରେ;
ବୈଦିକ ସୁ-ବର୍ଣ୍ଣା ଊଷା-ରଞ୍ଜିତ ଏ ଜନର ମନ୍ଥରେ
ସୂର୍ଯ୍ୟର ରକ୍ତିମାସ୍ନାତ ମେରୁଗିରି—ସୁନାର ଭୂଧର;
ବର୍ଷର ମାଳଦେଶେ କଳିଙ୍ଗର ଦୋଇତ ବହର
ଆସିବା ସୁବର୍ଣ୍ଣ ଦ୍ୱୀପ; ସୁନାସିଂହ ହସଖେଳ କଥା,—
ଏହିପରି କେତେ କ'ଣ,—ମିଛବାକେ ଅଦ୍ଭୁତ ବାରତା ।
ସାରଙ୍କ ଆବେଗ କଣ୍ଠ ବାଲିର ମୋ ବହ୍ନିଳ ଆଖିରେ
ଅଙ୍କି ଥିଲା ଅତୀତର ପ୍ରାଣବନ୍ତ ଛବି ଏକ ବର୍ଣ୍ଣାଢ୍ୟ ଭୂଧର ।
ଇଆପରେ ଦେଖିଛି ମୁଁ ବାରବାର ସୁବର୍ଣ୍ଣର ସେଇ କଳ୍ପଛବି
ଆପଣା ସୃଜନ ମୁଗ୍ଧ ଶିଳ୍ପୀ ପରି ପ୍ରାଣ ଦେଇ ଦ୍ରବି;
ସେଇ ଛବି ବସ୍ତୁତର ଗହ୍ୱରରେ ସାରଙ୍କର ଆବେଗ ସଙ୍ଗୀତ
ଶୁଣିଛି ମୁଁ ଅସୁମାର ମୂର୍ଚ୍ଛନାରେ ହୋଇ ବହ୍ନିଳିତ ।
କିନ୍ତୁ ସେ ଅଞ୍ଜନ ଅବା ଛାଡିଗଲା ! ଦେଖିଲି ମୁଁ ସୁନା ଖାଲି ସୁନା;
ବାଲିର ବ୍ୟଞ୍ଜନା ହାୟ ଭୁଲିଗଲି ରହି ମାତ୍ର କସ୍ତୁର୍ ନମୁନା—
ବଦଶା, ସୁବର୍ଣ୍ଣଦ୍ୱୀପ, ଭକ୍ତସ୍ମିନ, କହୁ କହୁ ସୁନାଫଳ, ସୁନାର ଫସଲ ।
ଫସଲ କଟାର ଗୀତ ଭୁଲିଗଲି ସାରଙ୍କର,—ଭୁଲିଗଲି ସୁନାର ଗଜଲ ।
ଯାହା କହୁ ଜହ୍ନିଗଲା ସାଦା ସାଦା ପ୍ରତିଧ୍ୱନି କଣ୍ଠସ୍ୱର ଲହର;—
ଆବେଗର ସ୍ୱପ୍ନ ନାହିଁ, ଭାଙ୍ଗି ଗଲା ହୃଦ ସେଇ ସ୍ୱର୍ଣ୍ଣର ବନ୍ଦର !!

ସାର୍ତ୍ରଙ୍କୁ ଭେଟିଲି ଏବେ ଅକସ୍ମାତ୍ ଶୀର୍ଣ୍ଣ ଏକ ସଂହୃତ ସନ୍ଧ୍ୟାରେ
ଜନ-ବାସ୍ ଦୂର୍ବାଦଳ ଚତ୍ୱଳରେ ଅଧା ଅଧା ଆଲୋକ-ଅନ୍ଧାରେ ।
ସହଜେ ଚେହେଲକ ଚହ୍ଣି;—ଏ ମୂର୍ତ୍ତିରେ ଅଙ୍କିତ ବା କାଗର ବୟସ !
ଅପରିଚୟରେ ଯେତେକ୍ଷେ ପରିଚୟ, ପରିଚୟେ—ଅବୋଧ ରହସ୍ୟ !!
ବ୍ୟଥିତେ କହିଲେ ସାର୍ତ୍ର, 'ସୁଖୀ' କହିଲି ଦେଇଯିବ ମୋର ଶେଷ ବାଣୀ—
ଶେଷର ଭରତ ବାକ୍ୟ—ସତ୍ୟଟିଏ—ହୃଦୟର ନିଭୃତ କାହାଣୀ ।
ସୁନା ଫସଲର ଧାନ, ସୁନାମେରୁ ସୁନାର ବାଉତା
ଯାହାକୁ ଯା ଦେଇଥିଲି ସୁନା ଆଖି,—ସବୁ ଅଛି କଥା ।
ସକଳ ଇ ହେ ଆଖିରେ ସୁନା ଦିଶେ, (ଦେଖନ୍ତ ଆମସ୍ତା !)
ସେ ସୁବର୍ଣ୍ଣେ ଧାନଦୁଃଖୀ-ଦୁଃଖତାପ ଦିଶେ ଛଳ-ମଞ୍ଜୁଳ ଶ୍ରୀମୟ ।
ସ୍ୱର୍ଣ୍ଣ ଚ ଫେସ୍ଥିଲି ନେବ ସୁନା ଅଖି, ଯାହେତ ସୁନାର,
ସତ୍ୟରେ ଅନେକ ପ୍ରାପ୍ତ ମିଶେ ନାହିଁ, ଯଥା ଏଇ ଆଲୋକେ ଅନ୍ଧାର ।
ଆସନ୍ତାକାଲିଠୁଁ ଯେବେ କଳ୍ପସବ ଗୀତ ଗୀତ ସେ ବନ୍ଦ୍ରା ଦିନ
ବାଲୁର ସମସ୍ତ ମନେ ଫୁଟାନ୍ତୁ ମୁଁ ମାଟିଫୁଲ ଯାତନାର, ଅଥଚ ଶାଳୀନ
ଦେଶ ମୁହିଁ ଭଲ ପାଏ । ତଥାପି ଏ ଦେଶଟା କି ବିଚିତ୍ର ଖିଆଲ !
ଚଳଣିର ଧାର୍ମ-ଧର୍ମେ, ଧନେ, ମନେ, ଜନେ ଜନେ ଆକାଶ ପାତାଳ ।
ହୁଏ ତ ଫଳରେ ସୁନା ଏ ପାଖରେ ଲେଲିହ ଲେଲିହ କାଟିଲ ବିଳାସେ,
ସେ ପାଖେ ଜୀବନ ଖୋଜେ ଅନ୍ଧ ଆଖେ ମଣିଷ ଇ ମୁଖୁର ପରାସେ ।
କାଳର ସମସ୍ତ କଣ୍ଟକକୁ ଲେ ସେ, 'ଯାତ୍ରା ମୋର କହିବାର କଥା
ବୋଧ ଅଛି; ଅଚ୍ଛା ତୁମେ ଦେଖିଥିବ ବଂଗେ ଦିଲ୍ଲୀ କିବା କଲିକତା ।
ଏଣିକି କହିବା ଅନେ ବସୁଧା ଇ ପରିବାର ଅବା ମୈତ୍ରୀବାଣୀ,
ପାଖର ମଣିଷ ଚିହ୍ନ ।' ସାର୍ତ୍ରଙ୍କର କହାଣିରେ ଏବେ ମୁହିଁ କୁଆର ସନ୍ଧାନୀ ।



# ଅଶ୍ୱଶ୍ୱାସଥ

ଚନ୍ତାମଣି ବେହେରା

'Monster he killed many
But one he could not tame—himself.''

Sophocles : Haraclitus

ମନେହୁଏ ଏ ନାବିକର ପ୍ରାଣ ମୋ'ର ଦିନେ
କେଉଁ ଦୂର ମହାଶୂନ୍ୟା—ନକ୍ଷତ୍ର ଜଳସ୍ରେ
ଆରମ୍ଭି ଥିଲା ତା ଯାତ୍ରା
ଯେଉଁ ଏକ ଅସୀମ ଉଦ୍ଦେଶ୍ୟ
ଜାଳିବାକୁ ଚିରନ୍ତର ଧୂପ—ଗଢ଼ିବାକୁ ଜୀବନର ସ୍ୱପ୍ନ ।

ସହସ୍ର ତରଙ୍ଗ କ୍ଷୁବ୍ଧ ବିକ୍ଷୋଭିତ-ବାୟୁ ସାଗରର
ଅନ୍ତହୀନ ତମ୍ର [illegible] ନେପଥ୍ୟ-ଉର୍ମିର ଅଗ୍ନେୟ—ସରଣୀ
ଡେଣାଦେଲା ମୋ ନାବିକା ପ୍ରାଣ ପୁଣି ଦିନେ
ଶୀତ-ସ୍ତବ୍ଧ ଅମୂର୍ତ୍ତର ଶୂନ୍ୟ ଦେଲା ଦେଶେ
ମାପିବାକୁ ସାଗର-ପରିଧି
ଅତଳାନ୍ତ ପ୍ରାଣ-ଗଭୀରତା ।

ଅନେକ ଅନେକ ଶତ୍ରୁ
ସୁପ୍ତ ପଡ଼େ ଜୀବନର ପଥେ
ଆସିଛନ୍ତି ଗ୍ରାସିବାକୁ ମୋ' ନାବିକା ଆଶା
ବୁଡ଼ାଇ ଦେବାକୁ ମୋର ପଣ୍ୟ-ତରୀ ପ୍ରଳୟ-ସାଗରେ
ଯୁଗ ଯୁଗ ସଂଚିତ ମୋ ସଫଳତା-ତପସ୍ୟାର ଶିଖା ।

ଶତାବ୍ଦୀ ଶତାବ୍ଦୀ ଧରି ଏଇ କ୍ଳାନ୍ତ ପୃଥିବୀର ପଥେ
ଅନେକ ଅରଣ୍ୟ ପଥ-ହିଂସ୍ର ସାଥୀ-ଗୁହା ଅନ୍ଧକାର
ଅତିକ୍ରମି ସବୁ କଣ୍ଟ-ବନ୍ଧୁର ପଦେ ଦଳି ବିଘ୍ନରାଶି
ଲଭିଚି ମୋ ଯାତ୍ରା-ତରୀ ଆଜି ଏକ ଆଲୋକ-ବନ୍ଦରେ
ହୁଏ ତ କରିଚ ପୂର୍ଣ୍ଣ ପ୍ରାଣ କକ୍ଷ ଉପସ୍ଥିତ ସମ୍ପଦେ
ଜ୍ୟୋତିର୍ମୟ ଯୌବନର ବେଦେ ।

ସତ୍ୟ ମୁଁ ଲଭିଛି ପଥେ ଅନ୍ଧକାର କେତେ ହିଂସ୍ରଜନ୍ତୁ
ରୋଧିଛି ଶ୍ୱାପଦ ଗଣ-ଅସୁରଙ୍କ ହିଂସ୍ର ଆକ୍ରମଣ
ତାଡ଼କା-ପୂତନା ଅବା କଂସାସୁର କେତେ ଦଶାନନ
ଚନାଇଛି ଯାତ୍ରା ପଥେ ଗାଇବାକୁ ପ୍ରାଣର ବନ୍ଦନା
ପଢ଼ିବାକୁ ଆଲୋକର ବାଣୀ-କରିବାକୁ ନୂତନ ସର୍ଜନା ।
ସରଳତା-ବିଶ୍ୱାସର ମୈତ୍ରୀ-ପ୍ରୀତି ବଳେ
ଜିଣିଛି ମୁଁ କୋଟି ବିଘ୍ନ-ଦୁର୍ଗ
ଗାଇଚି ମୁଖର ସୁରେ ନଚିକେତା ଅମୃତର ଗୀତା
"ମନୁପୁତ୍ର" ମୁଁ ମୁଖ୍ୟ ଶାସ୍ତ୍ର ।

କିନ୍ତୁ ହାୟ ! ମନେହୁଏ କ୍ଷୁଦ୍ର ମୋର ପ୍ରାଣ-ତରୀ ବୁକେ
କେବଳ ମୁଁ ଭରନାହିଁ ଅଭିଷେକ ସ୍ୱର୍ଗ-ଦେବତାର
ଦେବତାର ପାର୍ଶ୍ୱେ ସଦା
ସମାସୀନ କରାଇଛି ଅଭିଶପ୍ତ ନର୍କ-ଶୟତାନ
ରୁଧିରକ୍ତ କରେ ଯେଉଁ ହିଂସ୍ର ନଖେ-ତୀକ୍ଷ୍ଣ ଦନ୍ତେ
ମୋ ଭରତ ଅଗ୍ନି-ସ୍ୱଚ୍ଛ ଆତ୍ମା ।

ସମସ୍ତ ଗୌରବ ଭୁଲି-ଭୁଲି ସ୍ୱର୍ଗ ସାଧନାର ବାଣୀ
ଅବା ଶତ ବିଜୟ-ସଂଗୀତ
ପ୍ରାଚୀନ ଗହ୍ୱରେ ଯେବେ ଜାଗେ ଏଇ ଶୟତାନ ରୂପ
ରକ୍ତ ମୁଖ—ରକ୍ତ ତୃଷାତୁର

ଯେତେବେଳେ ନିଜଠାରେ ନିଜେ ହୁଏ ଚରମ ବିମୁଖ
ନିଜରେ ମୁଁ କରେଁ ଅବିଶ୍ୱାସ
ଦେବ ବଂଶୀ ଅଟଇ ମୁଁ ଅବା ଏଇ ଅସୁର ଗୋଷ୍ଠୀର ।
ଅନେକ ସାଧନା ପରେ-ସୁଖ ସିଦ୍ଧି-ଫଳପ୍ରାପ୍ତି ପରେ
ଜାଗିଛି ଅସୁର ଏକ ରକ୍ତମୁଖା ଦାନବ ମୋ ପ୍ରାଣେ
ହୁଏତ ଅତମନସ୍କ ଚିର ଦିନ ଅବିଶ୍ୱାସ୍ୟ ପାଣେ
ଅଶାନ୍ତ, ଅଲଂଘ୍ୟ ତାର ରକ୍ତ ତୃଷ୍ଣା-ମାଂସ କ୍ଷୁଧା ପୁଣି
ରହିବ ଅନ୍ତରେ ମୋର ଅତତାୟୀ ଏ ଦଇ-ତନୟ
ସହୋଦର ରୂପେ ସଦା ଶ୍ରେୟସ୍କାମୀ ଦେବସୁତ ସାଥେ ।

ହୁଏତ ମୁଁ ନିଜଠାରେ ବିବେଚକ ହେଉଥିବ ନିଜେ
ଚିର ଏକ ଆସୁସ୍ତ ଧସୁସ୍
ଏକ କ୍ରୂର ମନୁଷ୍ୟ-ଖାଦକ
ନିଜର ରକ୍ଷକ ରୂପେଁ-ଅଟେ କି ମୁଁ ନିଜର ଭକ୍ଷକ
ଦେବ-ଦୈତ୍ୟ ରୂପୀ ଏକ ସନାତନ ବିସ୍ମୟର ଚିହ୍ନ
ବିଶ୍ୱାସ-ମୁକୁଟ ପିନ୍ଧା ଅବିଶ୍ୱାସ୍ୟ ମୋ ନିଭୃତ ରୂପ ।



# ଆଶ୍ରମୁଁ ବିଦାୟ

ବିଦ୍ୟୁତ୍‌ପ୍ରଭା ଦେବୀ

ବନ୍ଧା ପଞ୍ଜର ଆତ୍ମା ମୋର ଏ
ମହ୍ତା ସମାଧିର ପାଶେ
ତେଜ ଆଶ୍ରମ ଜନ୍ମଭୂମି ମୁ
ଯାଏ ଆଜ ପରବାସେ ।

ଜନମ ଜନମ ଚିର ପରିଚିତ
ସତେ କି ଏ ଗୋଡ଼ି ମାଟି
ହୃଦୟେ ହୃଦୟେ ଗୁଲେ କଥାକ୍ଷଣା
ଶୁଭେ କାହିଁ ପ୍ରିନା ପାଷ୍ଟି ।

ଦୂର ଅତୀତେ କି ଗ୍ରନ୍ଥି ଯାଇଥିଲି
ଏହି ଗୃହ ଏହି ପଥ
ସ୍ୱର୍ଗର ଘନ ଆଲୋକ ସମାନ
ଲାଗେ ଫରି ସତେ ସତ ।

ଶାନ୍ତା ପ୍ରାନ୍ତର ନୟନ ଭରି ମୁଁ
ଦେଖିଆଏଁ ଟିକେ ତତେ
ଶାନ୍ତ ଧ୍ୟାନ ବଳଦ ଦେବତା
ମନେ ରଖିବୁ ନା ମତେ ?

ପୋଷିଥିଲି ଅଶା ଯାପିବାରେ ଯୋଗ—
ଜୀବନ ତୋର ଏ ସ୍ଥାନେ
ହେ ମହାସାଗର ! ସେ ଅଶା ହଜିଲା
ସେହୁ ଆଶା ଜଳଧିରେ ।

ନବ ଯୌବନା "ନନ୍ଦନ" ! ତୋର
ପୁଷ୍ପିତ ପରସାଦେ
ମୁଗଧ ମୁଁ ଦେଖେ ଛାଡ଼ି ଯିବାକୁ ତ
ନ ଚଳେ ଅଗକୁ ପାଦେ ।

ଏ ଜନମେ ଯିବା ହେଲେ ରେ ଚନ୍ଦ୍ରା
ଆଶ୍ରମ ଯୋଗେ ଅମେ
ହେ ଉଷା ନଗରୀ ! ତୋର ମୂର୍ତ୍ତି ସ୍ମୃତି
ଲଗିବ ମାଆର ଧାମେ ।

ପ୍ରାଣପ୍ରିୟ ଠାରୁଁ ବିଦାୟ ନେଇ ମୁଁ
ଯାଉଛି ସୁଦୂରେ ଫେରି
କୃପାକଣା ଖାଲି ଟାଣି ବା ଅଣିବ
ବାଙ୍କୁଡ଼ା ହୋଇଛି ଡେରି ।

ଏକାଇ ମାଆଁର ସନ୍ତାନ ସବୁ
ମିଶି ଅଛେ ଏକ ଠାଇଁ
ମହା ମିଳନର ମହା ପରବାକୁ
ବରଷେ କେ ସୃଷ୍ଟେ ଥାଇ ।

ମନ ପ୍ରାଣ ମାୟା ବାନ୍ଧୁଛି ଯେଉଁ
ପାର୍ଥିବ ସ୍ନେହ ପାଶେ
ମାଆ ଭଗବତୀ ଛିନ୍ନ କର ତା
ଦିବ୍ୟ ପ୍ରେମର ହାସେ ।

ସେହୁ ହୃଦସ୍ଥିତ  ପାଥେୟ ହେଉ ମୋ
ଜଟିଳ ଜୀବନ ପଥେ
ଯାଥେ ଯାଥେ ସ୍ଖଳ  ହେ ପ୍ରିୟ ଜନନୀ
ନେଉ ଅଛୁ ଯହିଁ ମତେ ।

ଯାଉଛୁ ଏବେ ରେ  "ଓଡ଼ିଆ—ଜଳଧି"
"ଓଡ଼ିଶା—ଜଳଧେ" ମୂର୍ଦ୍ଧେ
ଶେଷଥର ପାଇଁ  ଚମ୍ପକ ଝର
ଏଇ ତୋ ତୋରଣ ଛୁଇଁ ।



['ଜ୍ୟୋତିଶିଖା'ରୁ ଆନୀତ]

# ରାତ୍ରି

ଶ୍ରୀମତୀ ବ୍ରହ୍ମୋତ୍ରୀ ମହାନ୍ତି

ଆଜି ଏ ଭୂମିର ରାତ୍ରି, ଚତୁର୍ଦ୍ଦିଗେ ନିରାଟ ସ୍ତବ୍ଧତା,
ଶୂନ୍ୟାଙ୍କଣେ ଜଳୁଛନ୍ତି କୌତୂହଳେ ଅଜସ୍ର ତାରକା
ଏ ଧରଣୀ ବୁକେ ରାତ୍ରି ମନତଳେ, ସହସ୍ର ଉତ୍କଣ୍ଠା,
କ୍ଷୀଣ ଦୀପାଲୋକେ କେବେ ରହସ୍ୟର ହୁଏ ଉଦ୍‌ଘାଟନ ?

ଦିବସର ସୂର୍ଯ୍ୟାଲୋକେ ଅନ୍ଧ, ରଜନୀରେ ପଥ ଭୁଲି ହୁଏ,
ତେଣୁ କି ସେମାନେ ସ୍ଥିର, ଅଭିଶପ୍ତ ଅଭିଶପ୍ତ ସତେ ?
ଦାରିଦ୍ର୍ୟ ମ୍ଳାନ, ଉପହାସ, ଅବଜ୍ଞାତ, ଆଖିତଳେ ଅର୍ଦ୍ଧମ୍ଳାନ ହସ,
ଆସ୍ପର୍ଦ୍ଧା ସେ କୌତୂହଳ, ନିର୍ଲଜର ଅପମାନ କାହିଁ ?

ଏ ରାତ୍ରିର ଆବରଣର ତଳେ ଦିବସର ଅଜସ୍ର କୌତୁକ,
ପ୍ରଚ୍ଛନ୍ନ ରହିଛି ବେଶ୍, ଦେଖିବ ଯା’ ଦେଖି ହୁଏ ନାହିଁ,
ଅନନ୍ତ ଗୌରବ କେତେ ଲୁଚିରହେ ନିଘଞ୍ଚ ଭୂମିରେ
ସୀମାହୀନ ଗ୍ଳାନି ମଧ୍ୟ ଲୁଚି ଲୁଚି ଆତ୍ମରକ୍ଷା କରେ ।

ଏ ରଜନୀ ନିରପେକ୍ଷ, ସବୁକିଛି ଏକାକାର କରି
ପ୍ରତ୍ୟେକର ନିଜସ୍ୱ ସେ ଢଙ୍ଗେ, ଦିବସର ତୀବ୍ର ଭେଦବୁଦ୍ଧି
ଅପମାନେ ପରାଜିତ, ମରଣର ପଦାଙ୍କାନୁସରି
ସେ ପ୍ରଶ୍ରୟେ ସାମ୍ୟଭାବ, ବନ୍ଧୁତା’ ବାହୁସ୍ପର୍ଶତଳେ ।

ଏ ସୃଷ୍ଟି କି ନନ୍ଦିତର ? ଅଚେତନ ଐଶ୍ୱର୍ଯ୍ୟେ ଦର୍ପିତ
ଦିଗେ ଦିଗେ ସର୍ବବ୍ୟାପ୍ତ, ଦିବସର କ୍ଳାନ୍ତ ଢୁଲୁ ଢୁଲୁ
ଉଷାର ଉଜ୍ଜ୍ୱଳ ହସ, ଫେରେ କିଏ ମନ୍ଥର ଚରଣେ,
ଶୁଣେନା ସେ ପଛୁ ଯେତେ ଡାକିଲେ ବି ଗୁହାରି ଗୁହାରି ।

ଅନ୍ଧାର ପ୍ରଥମ ସତ୍ୟ, ପ୍ରସୂତ ସେ ଅଦ୍ୟ ଆଲୋକର
ପଙ୍କରୁ ପଙ୍କଜ ଯଥା, ପଦ୍ମଗର୍ଭେ ଅଳିର ସୁଷୁପ୍ତି,
ଆଲୋକର ଉନ୍ମାଦନା ଅପମୃତ୍ୟୁ, ରଜନୀର ଶୀତଳ ଶୁଶ୍ରୂଷାରେ
ଜୀବନର ମୂଲ୍ୟ ଅଛି, ତମିସ୍ରର ଯବନିକା ତଳେ ।

ଏ ନିବିଡ଼ ଅନ୍ଧକାରେ ମୁଁ ଦେଖୁଛି ଆପଣାକୁ ଖୁଣ୍ଟି
ଅସ୍ତିତ୍ୱ ମୋ ନାହିଁ ହାୟ ! ତଥାପି ମୋ ସ୍ଥିତି ମିଥ୍ୟା ନୁହେଁ
ଅଦ୍ଭୁତ ଏ ପ୍ରହେଳିକା, ଚିନ୍ତାସ୍ରୋତ ଅତ୍ୟନ୍ତ ପ୍ରଖର,
ଅନ୍ଧ-ଉପଲବ୍ଧି ତେଣୁ ଆଲୋକରୁ ଅନ୍ଧକାରେ ବେଶି !

ତେଣୁ ଏ ସୃଷ୍ଟିରେ ଆଜି ଆନ୍ତରିକ ସ୍ୱାଗତ ଜଣାଏ
ଉତ୍କର୍ଣ୍ଣେ ମୁଁ ଶୁଣେ ତା'ର ଶବ୍ଦହୀନ ନୀରବ ସଙ୍ଗୀତ,
ସେ ସଙ୍ଗୀତ ମୂର୍ଚ୍ଛନାରେ ଅଙ୍ଗେ ଅଙ୍ଗେ ଅପୂର୍ବ ଶୀତ୍କାର
ଅମୃତର ଆସ୍ୱାଦନ ଅନୁଭୂତ ଅନିର୍ବଚନୀୟ ।

ରାତର ଏ ଶ୍ୟାମରୂପ ଘନନୀଳ ଆପାଦମସ୍ତକ,
ଅଧରେ ବେଣୁର ଧ୍ୱନି, ବିରହର, କାହିଁ ପ୍ରିୟା ଶ୍ରୀମତୀ ରୂପସୀ ?
ଶ୍ୟାମ ଖୋଜେ ଶ୍ରୀମତୀରେ, ଶ୍ରୀମତୀ କି ଝୁରେନା ନୀରବେ
ଶ୍ୟାମର ଅବର୍ତ୍ତମାନେ, କିଏ ଖୋଜେ କାହାକୁ କିପରି !

ମୁଁ ତ ସେହି ବିରହିଣୀ ଫୁଲଶେଯ୍ୟା କରୁଛି ରଚନା
ଅଜସ୍ର ଉତ୍କଣ୍ଠା ହୃଦେ, ପଥ ଚାହିଁ ଆଖି ପାଣି ମରେ
କାହିଁ ସେ ନିଷ୍ଠୁର ହାୟ, ଚନ୍ଦ୍ରାବଳୀ ବାହୁପାଶେ ବନ୍ଦୀ !
ସଖୀ ଦ୍ୱାର ବନ୍ଦ କର, ଆସେ ଯଦି କପଟୀରେ ଲେଉଟାଇ ଦିଅ ।

ଏ ବିରହ, ଅଭିମାନ, ପ୍ରତୀକ୍ଷା ଓ ପ୍ରୀତି-ଉନ୍ମାଦନା,
ଉଚ୍ଛ୍ୱସିତ ଅଶ୍ରୁପାତ, ତଳ ତଳ ବିରହେ ବିଦଗ୍ଧ
ତନୁ ମନ ଜର୍ଜରିତ, କ୍ଷୁବ୍ଧପକ୍ଷେ ପକ୍ଷୀର ପତନ
ଚମକି ଜାଗଇ ରାଧା ଏଇ ବୋଧେ ଆସେ ପ୍ରାଣନାଥ ।

ସେତିକରେ ଶେଷ ନୁହେଁ, ସୋପାନ ଶ୍ରେଣୀର ସେ ତ ପ୍ରଥମ ପାହାଚ,
ଏତେ ମାନ, ଅଭିମାନ ଧୀରେ ଧୀରେ ଘନୀଭୂତ ହୋଇ
କ୍ରମଶଃ ନିଜକୁ ଭୁଲେ, କାହାଲାଗି ଅଶ୍ରୁଝର ଏତେ ?
ଦ୍ୱୈତର ବୈଚିତ୍ର୍ୟ, କ୍ରମେ ଅଦ୍ୱୈତରେ କେନ୍ଦ୍ରୀଭୂତ ହୁଏ ।

ହେ ରାତ୍ରି, ଚରଣେ ତବ, ଆଜ ମୋର କୋଟି ନମସ୍କାର
ତୁମର ଏ ମହାଦାନ, ବାହୁ ବନ୍ଧେ ପରମ ଆଶ୍ଳେଷ
ଶ୍ରବଣେ ଅଧର ଆପି ସ୍ୱପ୍ନାସ୍ୱନ ପୀୟୂଷ ଆବୃତ
ଭୁଲିବି କପରି କୁହ ? ତୁମେ ମୋତେ ଭୁଲନ ସୁନ୍ଦର ।

ଆଲୋକ ମୋ ଲୋଡ଼ା ନାହିଁ, ଦିବସର ତୀବ୍ର ସ୍ପର୍ଶାଲୋକେ
ଏ ମଣିଷ ଅନ୍ଧ ହୁଏ, ମନେପଡ଼େ ବିଲ୍ୱମଙ୍ଗଳର
କୃତିତ୍ୱ, ନୟନ ନାଶି ପୃଥିବୀର ଆଲୋକରେ ଭୁଲି
ତୁମକୁ ନେଲ ସେ ଲୋଡ଼ି କେଉଁ ଲୋଭେ କି ପ୍ରାପ୍ତି ଆଶାରେ ?

ଦିଗ୍‌ବଳୟେ ଦେଇ ଫୁଟେ, ଅନାଗତ ଦିବାର ଇଙ୍ଗିତ
ମୋ ମନେ ଅଦ୍ଭୁତ ଭୟ, ଏତେ ପ୍ରାପ୍ତି ସ୍ଥିର ଉଚ୍ଛ୍ୱାସ
ସବୁ ତ ନିଶ୍ଚିହ୍ନ ହେବ ଆଲୋକର ତୀବ୍ର ବିଶ୍ଳେଷଣ
ହେ ରଜନୀ ଅନୁନୟ, ତୁମେ ମୋତେ ଲୁପ୍ତକର ତୁମର ଗରଭେ ।

# ଓଡ଼ିଶା

ଉମାଶଙ୍କର ପଣ୍ଡା

ତୋ ହୃଦୟରେ ମୋର ହୃଦୟ
ମୋ ରକ୍ତରେ ତୋହରି ରକ୍ତର
ଲକ୍ଷେ ସ୍ୱର ସୁନା ପଦ୍ମଫୁଲ୍ ।
ଅନେକଶତ ରାଣୀଂକର ମଥାର ସିଂଦୂର
ସୂର୍ଯ୍ୟ ହୋଇ ଜଳି ଉଠେ
କାନ୍ଦନା ଲୋ ଜନମାଣ୍ଟି ମାଆ ମୋର !
ଗୋପପୁରେ ମୁଁ ବଢ଼ୁ ଛୁ ସନ୍ତାନ ତୋ ଅଷ୍ଟମ ଗର୍ଭର ।

ମୋ କଂଠରେ ତୋହରି କଂଠର
ନାନାବାଦ୍ୟ ଗୀତ ନାହିଁ,
ଅଛି ଏକ ଅନ୍ତରୁଦ୍ଧ ଝଡ଼ର ଝଂକାର ।
କା ମୁହଁର ମାନଚିତ୍ର ପାସୁଲିରେ ମୋର
ଦୁଇଟି କରୁଣ ଆଖି ମମତାଲେ ଛଳ ଛଳ ଆଶ୍ଚର୍ଯ୍ୟ ଉଜ୍ଜ୍ୱଳ,
ସେ କି ଅବା ଆପଣାର ମୋ ମାଆର
ମୋ ଦୁଃଖିନୀ ଓଡ଼ିଶାର ଜଗା କାଳିଆର !
ନିଃସଙ୍ଗ ଦୁଃଖର ଦିନ
ପୁନଶ୍ଚ ମୋ ଯନ୍ତ୍ରଣାର ଶୂନ୍ୟ ଗଳି, ଶୂନ୍ୟ ରାସ୍ତା,
ଶୂନ୍ୟ ସହରରେ ପକ୍ଷୀ ହୋଇ ଉଡ଼ିଯାଏ;
ନଦୀ ହୋଇ ବହିଯାଏ ! ଫୁଲହୋଇ ଝରିଯାଏ ।
ମାଆଲୋ ! ତୋ ପାଦକମଳ ଅଣତ କାଳରେ
ମୁଁ ଅଙ୍କେ ଶିଶୁଟିଏ ଛନ୍ଦ ଦୁଏ
ଧାନକ୍ଷେତ, ଦେଣାପାଟ, କାତକେନ୍ଦ୍ର ପୋଖରୀ ତୁଠରେ ।

ମୁଁ କ ତୋର ଚେତନାରେ ପୁନର୍ବାର ଜନ୍ମ ନଏ
ଜନ୍ମ ନଏ ପୁନରପି
ତୋହରି ସେ ହିରଣ୍ୟ ଗର୍ଭରେ !
ବାଇଶି ପାବଛ ତଳେ ମ୍ଲାନ ବୃଷ୍ଟି ଦଧି-ନଉଛରେ
ଚନ୍ଦ୍ରାଲୋକ ଗହ୍ୱରରେ
ଜଗପଦ ବକ୍ଷସ୍ଥ ଅମୃତ ଭଳି
ଚତୁର୍ଦ୍ଦିଗେ ଗାଢ଼ ବଞ୍ଚିତା,
ଅନ୍ଧକାର ମୃତ୍ୟୁ ଆସେ
ସେତେ ଶୋକେ ଜର୍ଜ୍ଜରିତ ପୃଥ୍ୱୀର ନଷ୍ଟ ଆତ୍ମା
ଲୋଟିବା ପୂର୍ବରୁ । ଫୁଲର ପ୍ରତ୍ୟୟ ନେଇ
ତା' ଦେହରୁ ଜ୍ୟୋତନେଇ, ତା' ସ୍ତନରୁ କ୍ଷୀରଧାର ପିଇ
ମୁଁ ବୁଝିଛୁ ଯନ୍ତ୍ରଣାର କଟିନ ଛାନ୍ଦେଇ ।

ତା' କୋଇଲି-ବୈକୁଣ୍ଠରୁ
ବଡ଼ଦାଣ୍ଡ, ଝାଉଁବଣ, ସ୍ୱର୍ଗଦ୍ୱାର ଟପିଯିବା ଆଗୁ ଏଠୁ
ଛପିଛି ନଗରୁ ! !
ମୋ ମାଆ ତ ମାଗିଥିଲା
ଶରଧା ବାଲିରୁ ହାତେ
ଚକାଡ଼ୋଳା ! ବାନ୍ଧୁ ଏ ବିଶ୍ୱାସ,
ସ୍ନେହର ପାଦରେ ତା'ର ତମେଇ ତ ଘୃଣା ଦେଲ,
ଈର୍ଷା ଦେଲ,
ଦେଲ ଭରି ଯନ୍ତ୍ରଣାର ବିଷ ।
ମୋ ମାଆର
ମୋ ଦୁଃଖିନୀ ଓଡ଼ିଶାର
ଓଠ ତଳୁ ଲିଭିଗଲା ହସ ।

କ: ଚ: ୧—୧୦

ମୁଁ କେମିତି ଲେଉଟାଣି ବାଟେ ମୋର
ଆଶ୍ରା ଜଣଆଂଛ ତୋତେ
ଗାଇଥାନ୍ତି ପ୍ରାର୍ଥନା ସଂଗୀତ,
ମୁଁ କେବେହେଲେ ଯାଆନ୍ତି ଭୁଲି
ମୋ ମାୟାର କୋଳ ଛୁଇଁ
ଅବୋଧ ଜନଗଣ !

ତୋ ଲୁହରେ ମୋର ଲୁହ
ମୋ ରୁଧିରେ ତୋହର ରୁଧିର
କାରଣ ତୋ ମାଆ ମୋର, ଜନ୍ମମାଟୀ ଏକ ଜାଣନା ତୋ :
ମୁଁ ଆଣିଛି ଆଶିଜାତ ମୁଠାଏ ସିନ୍ଦୂର
ଏବଂ ଶୁଭ୍ର ଏଧାତର
ମୁଁ ଦର୍ଶି ତୋପୁଟର ସନ୍ତାନ ତୋ ଅଷ୍ଟମ ଗର୍ଭର ।

—o—

# ଆଜି ପାର୍ବଣେ

## ବ୍ରଜନାଥ ରଥ

ଆଜ ପାର୍ବଣେ ପ୍ରୀତ ଉତ୍ସବ କାହିଁରେ
କେତେ ଜନନୀ, ଭଗିନୀ, ବଧୂ, ତନୟାର
ଚଳ ଚରଣ ଝୁରୁଛି;
କେତେ ମଙ୍ଗଳ ମଣ୍ଡପ ଅଙ୍ଗନର ଚିତା ହସୁଛି ।

କେତେ—ଶାନ୍ତ ମାନସ କୁଟୀରେ
କେତେ—କ୍ଷୁଦ୍ରକାମ ଗନ୍ଧ ମୁଠିକେ
ସ୍ନିଗ୍ଧ ଛଳ ଛଳ ଯୌବନ ଚନ୍ଦ୍ର ହସୁଛି ;
କେତେ ଘରଣୀର ଆଞ୍ଚି ଆତୁର
କେତେ ପ୍ରଣୟୀର ସ୍ୱର୍ଣ୍ଣ ସ୍ୱପ୍ନ
ଥର ଥର ଥର ପ୍ରାଣବଲ୍ଲଭ ଥରୁଛି ।

•

ଘନ ତମସାର ଗର୍ବିତ ନାଶ୍ଚି ପାଡ଼ରେ ···
ଆଜ ପାର୍ବଣେ ପ୍ରୀତ ଉତ୍ସବ କାହିଁରେ ?

ମାସ-ସଉଦାହିଁ ଜଳ ଜଳ ଯାଏ
'ଦେଶମା'ର ସ୍ୱପ୍ନ ସଳିତା
ଉତ୍ତେଜା ବଧୂର ଲାଲ ଲାଲ ଆଶେ
ଚରଣର ସ୍ୱପ୍ନ ଅଳତା,
କେମିତି ଜଳାବ ଦୁଇଟି ଜୀବନ-ବଳିତା ?

ଏତେ ବେଳେ କେଉଁ ନବ ପଶ୍ଚିଣୀତା—
କ୍ଳାନ୍ତ କରୁଣ ବଧୂରେ
ବହ୍ନିସ୍ତ ଅଶେ ଦଗ୍ଧ ହୃଦୟେ ଅଧୀରେ ;
ବାସର ଘରର ପ୍ରିୟ ଉପହାର
ସୁନା ଅଙ୍ଗୁଷ୍ଠି ଖୋଲୁଛି ;

ହଜିଗଲା ଧନ ଆଉକି ଆଣିବ ଫେରାଇ ?
ନୟନର ମାଟେ ବ୍ୟର୍ଥ-ଆଶାର
ମନ୍ଦାକିନୀ ସତେ ଝୁଲୁଛି ।

ହଜିଗଲା ତା'ର ମଧୁ ଯାମିନୀର
ସୁନା ସ୍ୱପ୍ନର ଛୁଇଁରେ···
ଆଜି ଯାଇଁଣେ ପ୍ରୀତି ଉତ୍ସବ କାନ୍ଦିରେ ?

କେଉଁ—ରଣଦେବତାଙ୍କ ଦରବାର ତଳେ
ତରବାରି, ତା'ର ଝୁଲୁଛି ;
ଛିନ୍ନ ବସନା ଧରଣୀର ଅଙ୍କ
କ୍ଳାନ୍ତ କପୋଳ ଜଳୁଛି ।

ଜନନୀ ବଧୂର ଶିଶୁ ସନ୍ତାନ
ସବାଧାର ପରେ ଲୋଲୁପୀ
କେତେ-ନୟନ ମେଲୁଛି ଉଲୁପୀ :

ନର ଶବୁମାର କଳୁଷିତ ଦେଶା ଉତ୍ପାତେ
ଲଭିଯାଏ କେତେ କଷ୍ଟ ଶିଶୁର ଦରେଣ୍ଟି
'ଭସ୍ମାସୁର'ର ଅଜବ ସଦନ ରଜୁଡ
ମୋଡ଼ିଯାଏ କେତେ ମଣିଷ ମଥାର କରେଣ୍ଟି ।

ଶାନ୍ତିର ଶତ ପ୍ରସୁପ୍ତ ପକ୍ଷୀ
କେବେ ବା ଉଠିବ ଗାଇରେ...
ଆଜ ପାର୍ବଣେ ପ୍ରୀତି ଉତ୍ସବ କାହିଁରେ ?

କାହିଁବା ଶାନ୍ତି, କାହିଁବା ମୁକ୍ତି
ସବୁ ତ ବନ୍ଧ୍ୟ ଛଳନା
ମରଣ ତ ଆଜ ନେଲଣି ସଉଁଟି
ଜୀବନର ଯେତେ ଖେଳନା !

କାହିଁ କେ କୁଟୀରେ ରୋଗରେ ଅଉଟି
ଝରେ କା ପ୍ରିୟାର କନକ ଦେହଟି
ମୁଖର ପଦେ ପଡ଼ୁଛି ଲେଉଟି
କେତେ ଯେ ଜୀବନ ଝରଣା
କଏ ବା କରୁଛି କଳଣା ?

ପୂର୍ବ ଗଗନେ ସୂର୍ଯ୍ୟତ କେବେ ଉଇଁବ
ପ୍ରାଣ-ପ୍ରାନ୍ତରେ କେବେ ତାର କର ଛୁଇଁବ ?
ଅଭ୍ୟୁଦୟର ବାର୍ତ୍ତା କି ତାର
ଆସିବ ତ ଆସି ନାହିଁରେ...
ଆଜ ପାର୍ବଣେ ପ୍ରୀତି ଉତ୍ସବ କାହିଁରେ ?

ଝର ଝର ଆଜ ଧରଣୀ ଅଙ୍କେ
ଝରୁଛି ଗଙ୍ଗ ଶିଉଳୀ;
ଲୁବ୍ଧକ ବାଣେ ମୁଗ୍ଧ ଆଶାର
କୁସୁମ ଯାଉଛି ମଉଳି ।

ଦଣ୍ଡସ୍ୱରେ ଆଜ ମରଣ ଅସହ୍ୟ ଝଙ୍କୁଛି
ଦୁସ୍ୱର ଘଣ୍ଟା ଖସଡ଼ା ପଥରେ ଗଡ଼ୁଛି
ଧ୍ୱଂସର ନିଆଁ ଜଳୁଛି ଏ ପାଖେ
ସେ ପାଖେ ମୃତ୍ୟୁ ଗରଳ
କାହିଁ ଅମୃତ, କାହିଁ ବା ଶାନ୍ତି
ଆଖିରେ ମିଥ୍ୟା ସରଳ ।

କେବେ ବା ଦୁଶିବ ସୂର୍ଯ୍ୟର ଶିଖା
ଆଲୋକର ଭିକ୍ଷା କବଚରେ···
ଆଜ ଯାବତେ ପ୍ରୀତି ଦୁସ୍ତ୍ରବ କାହିଁରେ ?

ତଥାପିରେ ସଖି ମରମରୁ ତୋର
ଅଙ୍ଗାର କୁସୁମ ଝଙ୍ଗନା!
ଅନ୍ଧାର ପଥେ ଜୀବନର ସନ୍ଧ୍ୟା ଦୁସ୍ୱନା ।

ଦୁଃଖ ଆସିଲେ ଭସ୍ମ ନାହିଁ ଓଟେନି
ସମ୍ମୁଖେ ଦେଖ ଆଲୋକ ;
କାଲି ଦେ' ଯେତେ ବାଧା ବନ୍ଧନ
ଭୁଲି ତୋ ଯାକ୍ଷ୍ମ ପଲକ ।

ପାହିଗିବ ଯେବେ ଅନ୍ଧାର ରାତି
ଶୁଭିବ ନୂତନ ଜୀବନର ଗୀତ
ଅରୁଣ କିରଣେ ଝଲସି ଉଠିବ ମସ୍ତକେ···
ସେ ଦିନ ଜାଣିବ ପ୍ରୀତି ପାବନ
ସେ ଦିନ ବାଜିବ କର କଙ୍କଣ ସସ୍ତରେ ।

—:*:—

# ମଶାଲ

ରବି ସିଂ

ଆସିଥିଲି, ଆସିଥିଲି,
ପ୍ରଦୀପର ଏକ ଜୀବନ ନେଇ ମୁଁ ଆଲୋକ ଜାଳିବ ବୋଲି ।
ନାଚିଥିଲି ମୋର କଳ୍ପନା ବପନେ, ଅଥଚ ଭବିଷ୍ୟତ,
ଉଠିଥିଲା ଯେବେ ଆକାଶେ ତୋଫାନ୍ ବଢ଼ିଥିଲା ତାର ବେଗ ।
ତରୁ-ବାଟିକାର ଶ୍ୟାମ-ପଲ୍ଲବ, ସବୁଜ ଶୀର୍ଷ ଟେକି,
ଐକ୍ୟ ତାନରେ ଗାଉଥିଲେ ଯେବେ ପ୍ରକୃତିର ସ୍ୱାଗତିକା ।
ସେଦିନ ବେଳରେ ପ୍ରଦୀପ-ଶିଶୁ ମୁଁ ଧରାରେ ଉଠିଲି ଦୀପି,
ସେହି ଦୁର୍ଦ୍ଦିନ-ରାତିର ତୋଫାନ୍ କୋଳେ ଜନ୍ମ ମୋହର ଆସି !
ପ୍ରଳୟର ମେଘ ଦେଲା ଉତ୍ତର ସେଦିନ ନିଶୀଥ ରାତେ,
ପାଇଲି ଗୋଟିଏ ଅଗ୍ନିର କଣା ନିଘାତ ବଜ୍ରପାତେ ।
ସଳିତାରେ ମୋର ଜାଗ୍ରତ ଉଠିଲା ଆଲୋକ-ବାଳକାଟିଏ,
ଦୂର-ଅତୀତର ସେହି ସେ ଘଟଣା ଦେଖିଥିଲେ ହାସ୍ୟ ଯିଏ !
ସେମାନେ ବଦନ୍ତି, ବନ୍ଦ୍ୟାମନ୍ଦ୍ର ମଶାଣିର ଲେମକୂପ,
ଆପର ରୂପାନ୍ତରିତ ଘଟିଛି ଅଙ୍କ ମଶାଲର ରୂପେ ।
ମୁଁ ସେହି ମଶାଲ, ନିଖିଳର ହାତେ ମୁକ୍ତିର ଅଭିଯାନା,
ଧନତନ୍ତ୍ରର ଦାନବ-ପଞ୍ଜର ଦେଖି ଯିଏ ଚାହଁଣି—
ନେବ ବିପ୍ଳବୀ, ମୋତେ ଦେଖି ସିଏ ଫେରିବ ତା ଗତି ପଥେ,
ମୋହର ଆଲୋକ ବସାଇବ ତାକୁ ନେଇ ତାର ଜୟ ରଥେ ।

## ଦୁଃଖ କେବଳ ଏଇ !

ଧନତଂନ୍ତ୍ରର ସର୍ବ ଶୋଷିତ ଲୁଣ୍ଠିତ ପାଇଲି ନାହିଁ !
ଆଜନ୍ମରୁ ମୁଁ ବଞ୍ଚିତ କଲାଲି ନିଖିଳର ନିବେଦନେ,
ବୁଲିଇଲି କିଭ ଏଇ ସାଙ୍ଗତିଆ-ସଂସ୍କୃତି ଅଂଗନେ ।
ପାଉଁଣ କଲି ମୁଁ ତାର ଶିଳାଲେଖ, ପ୍ରତର୍ଦ୍ଧିସ୍ଥାର ମେଢ଼,
ମୋହଲର ପ୍ରବଳ ତାଡ଼ରେ ଫାଟିଛି ପଶ୍ଚ-କୃଷ୍ଟିର ଝାଡ଼ ।
ତଥାପି ରହିଛି ଧରଣୀରେ ଧନତଂନ୍ତ୍ରର ବୁଢ଼ାଆପା,
ଶବଦଶାରେ ଧ୍ୱଂସକ୍ଷା ତାର ଦେଖିଥାନ୍ତି ମୁଁ ଯଦି;
ସାମ୍ୟଯୁଗର ଲୋହିତ-ଲହରଣ,
ଦେଖିପାରିଥିଲେ ସାର୍ଥକ ହୋଇଥାନ୍ତା ମୋ ଯଉବନ ।
ନିର୍ଭବାରେ ମୋର ନାହିଁ ଆପତ୍ତି, ଲୋଡ଼ାଟିକେ ବିଶ୍ରାମ,
ଦ୍ୱନ୍ଦ୍ୱେ ଦ୍ୱନ୍ଦ୍ୱେ ଜୀବିତ ମୁଁ ସଦା; ସଂଘାତ, ସଂଗ୍ରାମ ।
ଯହିଁ ବିପ୍ଳବ, ଯହିଁ ବିଦ୍ରୋହ, ଯେଉଁଠି ମୁକ୍ତିକାମୀ,
ସେଇଠି ସର୍ବଗ୍ରାସୀ ମୋ ସତ୍ତା ଯେଉଁଠି ଶ୍ରମିକ ଶ୍ରେଣୀ ।
ଧନବାଦୀ-ଧନପ୍ରାନ୍ତର ବୁକେ ନୀଳବରେ ଜଳି ଜଳି,
ମୋର ସାଗ୍ନିକ ଯେ ପଞ୍ଚତନ୍ତ୍ର ଧରଣୀରେ ଗ୍ରୁଣ୍ଡିଗଲି ।
ଦେଇଗଲି ଯେଉଁ ତପ୍ତ ବେଦନ ଆଗାମୀ ଶିଶୁର ଅସେ,
ଯେତେ ଅଗ୍ନେୟ-ଅନୁରୋଧ ମମ ବିପ୍ଳବ-ଅଧିବେସେ ।
ସିଏ ଥିବ ତାର ବାର୍ତ୍ତାବାହକ, ଫେଗର୍-ଫଣ୍ଡଜ ଦଳ,
ଅଗ୍ରଗତିର ହାତେ ନେଇ ଦେବ ଏ ମୋର ଉତ୍ତ୍ର ହ୍ୱାର ।
ଜାଣେ ମୁଁ ଜାଣେରେ ସାଥି !
ଘଟିବ ତ ଦିନେ ଶ୍ରେଣୀ ବିଲୁପ୍ତି, ପାହିବ ଏ କଳା ରାତି ।
ଲୋହିତ୍ ଆକାଶରେ ଲାଲ୍-ଯବନିକା ଦେଖିବ ସର୍ବହରା,
ମୁଁ ସେତେବେ ନ ଥିବି, ପୂର୍ବାକାଶରେ ଜଳୁଥିବ ଏକ ତାରା ।
ତାକୁଇ କରିବ ରକ୍ତ ପ୍ରଣାମ, ସେ ତମ ପୂର୍ବ ସୂରୀ,
ସାପ ହୋଇ ଆସି ମଶାଲ୍ ରୂପରେ ସିଏ ଜଳିଥିଲା ଜଳି ।

—o—

# ନଙ୍କଗୁଞ୍ଜର

ରମାକାନ୍ତ ରଥ

ବାୟା ଚଢ଼େଇରେ                    ବାୟା ଚଢ଼େଇ ରୁ
ତାଳ ଗଛେ କରୁ ବସା,
ମାସେ ନୁହେଁ, ବର୍ଷେ ନୁହେଁ ବର୍ଷ ବର୍ଷ ଧରିବର୍ଷ ଗଲା
ଲେଉଟାଣି ଖରା ଖର ମଉଳାଇ ସ୍ୱପ୍ନର କାମନା,
ଗୁଜରାଣ ରହିଗଲା—                    ମୋ' କୁଞ୍ଜ ବାନ୍ଧୁ ରୁ
ତୋ ସାଙ୍ଗେ ଖେଳିବ ପଣା ।

ହଉ ତାଳଗଛ                    ଆକାଶ ଛୁଉଁଚ
—ରହିଗଲା ସବୁ ଅଭିମାନ
ମନର କୋଠିରେ ମୋର ଧାନ ପଣ ଭରଣ ଭରଣ ।

ନଈ କୂଳ ଆରପଟୁ ମାଡ଼ି ମାଡ଼ି ଆସୁଛୁ ଅନ୍ଧାର
ଗୋଧୂଳି ବେଲ୍ ଓ ଜିହ୍ୱ ମଗ୍ନ କରି କଜଳ ସୁଅରେ,
କେତେଦୂରେ ଚଟାଣିଲ, କେତେଦୂରେ ଏ ପଧାନ ପଡ଼ା
ମଝିରେ ଝୁଲୁଛୁ ସୁଅ ଦୁଇ କୂଳୁଁ ବଦାର ଅଡ଼ଡ଼ା ।

ତଥାପି ମୁଁ ଅଳଜକ୍କା ଗୁହେଁ ମୋ'ର ପାଉଁଶ ମୁହଁରେ
କାଳେ ତମେ ଆସୁଥିବ, ପାଦଯାକ ଧୂଳି ସରି ସରି,
କାଳେ ତମେ ଛତାବାଡ଼ି ରଖିଦେଇ ଦୁଆର ବନ୍ଧରେ
ପାଣି ଗ୍ଲାସେ ମାଗୁଥିବ ଲୋକ ରଖି ଘରବରଘର;
କାଳେ ତମେ ପଚାରିବ, ରୁ କାହିଁକି ଦଶୁରୁ ଶୁଖିଲା···
ମୁଁ ତମକୁ ଚାହୁଁ ଅଛୁ, କେହୁ ନାହିଁ ··ପାଗ ଗୁମୁରିଲା···

—ଲୁଣ୍ଠନ ମାଡ଼ୁଛି ଉପର,
ଢାଲୁଆ ବାଉସ୍ଥା          ଉଚ୍ଚ ତାଳ ଗଛ
ଉପରେ କରଇ ଘର ।

ମୋ ଭୁବନ ସୁବର୍ଣ୍ଣ,          ଅବଗୁଣ ନୁହେଁ
ଯାହା ଦେଖିଲେ ତାହା ଖାଏ
ଅର-ସାଇ ଗ୍ରାମୁ—          ନିକଷଣ ପୁଅକୁ
ନେ'ରେ ବାଉସ୍ଥା ନେଏ ।

ମୁଁ ମଧ୍ୟ ଆଶଙ୍କା କରେ, କାଳେ ତମେ ଅନୁନୟ କରି
ପାଣିଆ ଆଖିରେ ପଚାରିବ—ମୋ ଉପରେ ରାଗିଛ ମାଳତୀ ?
ସେ କଥା କହିବା ଆଗୁଁ ତମେ ଯଦି ଦେଇପାରୁଥାନ୍ତ !
ଜାଗା ତମ ପାଦତଳେ କେତେ ବେଶି କୃତାର୍ଥ ହୁଅନ୍ତି !

ମୁଁ ତମକୁ ଦୟାକରି କିଛି ଦବା ଆଶା କରିନାହିଁ
ଏତିକି ନୁହେଁ ତ, ତମେ ମୁହଁ ଖୋଲି କହୁଥାନ୍ତ ଥରେ,
ମୁଁ ଏହା ବୁଝୁଛି ତ, ଆଜି ଯାଏ ତମେ ସବୁ ଦେଇଥାନ୍ତ
ଦେଖୁଥାନ୍ତି ସନ୍ତୋଷର ହସ ତମ ଶୁଖିଲା ଓଠରେ ।

ମନା କରି ଫେରାଇବ ; ଯାହାସବୁ ମୁଁ ସ୍ୱପ୍ନରେ କେବେ ବି
କରିନ ପାରିବ ?—ଗ୍ରାମ୍ୟ କରଣ ପୁଅକୁ ନେ'ରେ ବାଉସ୍ଥା ନେଏ ।

ଅନ୍ଧାର ପଡ଼ୁଛି ଆଖି ବନ୍ଦକରି ଭୁଲିଯିବା ପାଇଁ
ଏ ସୁନ୍ଦର ଆଶା ସବୁ— ନେବେ ବାୟୁ ଧ୍ୱଂସ ଦେଇ ସ୍ୱପ୍ନ ପ୍ରକାଶତା
ମୁଁ ତୁମକୁ ବାରବାର କହୁଅଛି ଉଚ୍ଚ ଗଳା ସ୍ୱରରେ
ମୁଁ ଜନକୁ ବଡ଼ ମଣେ ତମଠୁଁ, ନନ୍ଦକ, ବାକି ସବୁଙ୍କ ଅପେକ୍ଷା
ମୁଁ ସ୍ପଷ୍ଟ କରୁଛି ମନା, ଦ୍ୱାହି ଦେଇ
ଏ ଗୁରୁ ଦର୍ପର ଦୁଃଖ ଏବଂ ସହନଶୀଳତା

ତମେ ପଛେ ହତ୍ୟା କର, ତମେ ପଛେ ଛିନ୍‌ଭିନ୍ କର
ମୋର ମାଂସ ଏବଂ କେନା କେନା କର ମୋ ତନୁକୁ
ମୁଁ ସ୍ପଷ୍ଟ କହୁଚ ମନା ମାଝ ଟଙ୍କା କେଟେ କୋଡ଼ି ଲାଗି
ହେବ ବସ୍ତୁତ ଏଠାରେ ।

ଏ ସୃଷ୍ଟି ଜମାଟ୍ ବାନ୍ଧେ ସକଳ କାଳିମା
ତାର ଭରି କାଖ ମୋ ମନ ଭିତରେ ।
ମତେ କାହିଁ ଲାଗୁଅଛି, ତମେ କହୁ କଣିଚ, ଲାଗୁଚ
ସତେ ଅବା ଖୁବ୍ ଗୋଟେ କଷ୍ଟ ଦେଲି । ସ୍ୱର୍ଗଅଟେ ମୁଁ ଖାଲି ଦେଖେ
କଳା କଳା ଭୂତ ସବୁ ବୁଲୁଚନ୍ତି ଆଉ ମତେ ମାଡ଼ି ବସୁଚନ୍ତି,
ମୁଁ ଚିତ୍‌କାର ମାଝ ପଗ୍ରକତ ହୁଏ ଗ୍ରହଦୋଷ ।

ସକଳ ବିଶ୍ୱାସ ମୋର, ସକଳ ଭରସା, ଏବଂ ମମତାର; ମୂଳକୁ ଉପାଡ଼ି
ମୃତାଶିଅ ସନ୍ଧ କଏ, ଅଣସ୍ତ୍ରଣ ପବନ ମୁହଁରେ
ସତେ ବା ଉଡ଼ାଇ ଦଏ, ସତେ ବା ମୁଁ ଧାନର ଅଗାଡ଼ି !

ଅବଶ୍ୟ ମୁଁ ପାଶବିକ ଭକ୍ତି କରୁ ଉର୍ଦ୍ଧ୍ୱ ସ୍ୱଭାବରେ
ହୋଇପାରେ ତମେ କରୁ କଲ ତମ ଅଜ୍ଞାତସାରରେ ।
ଅବାଲିକୁ ଯାଇ ତ ମୁଁ କରିବିନି ଶାସ୍ତି ପ୍ରାର୍ଥନା,
ତମକୁ ଭାବିବି ଦେବା ଲାଗି ତ ମୁଁ ଅକ୍ଷ କହିବନି,
ମାଝ ମୁଁ ପାଇଚ ଭଲ, ତମେ କଣ ତାହା ବୁଝିବନି ?

ଏହା ମିଛ ହୋଇଯାବେ, ଏ ଅନ୍ୟାୟ ତମେ କର ନାହିଁ ।
ରୂପହୀନ, ଗୁଣହୀନ ମାଲଣ ତା ଛିଜର ହାତରେ
ତମକୁ ଦେଇଚ ଗ୍ରନ୍ଥି— ପଣ୍ଡା ଗୋଲ ଗୋଲ
ହାଲିଆ ହୋଇଛୁ ଯେବେ
ଦହି ସତ ଆଉ ଦେହ ସବୁଲାରେ
ପେଟ ପୁରାଇବୁ ତେବେ ।

ଯେଉଁ ନଆଁ ହୁହୁଳୁଛି ମୋ ମନର ସନ୍ତୁଳ ସନ୍ଧିରେ
ମୁଁ ସେଥିରେ ପୋଡ଼ା ହୁଏଁ, ତମେ ଫେଣ ଦେଖ କାହୁଁ ନାହିଁ,

ଜଳନ୍ତୁ ମାଳତୀର ହାଡ଼ଖଣ୍ଡେ ପାଅନାହିଁ ତମେ
ଗାଡ଼ିଆର ସାତତାଳ ପଙ୍କ ତଳେ ଲୁଚୁ ପୋଡ଼ାମୁହିଁ ।

ନରଜ ହୋଇବ ଶୁଙ୍ଗା, ମୁକୁଳିବ ଡିମ୍ବ ଆଉ ଜମି
ମୁକୁଳିବ ମାଳତୀର ଶିକୁଳିବ ତମର ମନରୁ—
ମାଳତୀ ଅଛୁ କି ଘରେ ?
ସ୍କୁଲ ଛୁଟିଲେ କେତେ ଜନ ଆଉ ରଖିବୁ ଘଇତଣାଇ ?
ମାଳତି !

କଗସିମା ଝୋପେ ଦବୁ କି ମାଳତୀ ଅପା ?
ହଁ—ନାଇ—ଓ ! —ନାହିଁ ଲୋ······

ବାସ୍ନା ଚଢ଼େଇରେ ବାସ୍ନା ଚଢ଼େଇ ଲୁ
ତାଳଗଛେ କରୁ ବସା
ତଳକୁ ଆ’ରେ ମୋ କୁନ କାନ୍ଦୁଛି
ତୋ ସଙ୍ଗେ ଖେଳିବ ପଣା ।



# ଏରୋଡ୍ରମ

ସୀତାକାନ୍ତ ମହାପାତ୍ର

ଆକାଶରୁ ମାଟି
ମାଟିରୁ ଆକାଶ ॥

ବନ୍ଦରର କ୍ଳାନ୍ତ ଢେଉ
ଚକ୍ ଚକ୍ ରୁପା-ରଙ୍ଗ ଖଇ
ଅଗ୍ ଅଗ୍ ନମ୍ର ଆକାଶ
ସନ ସନ ଶୂନ୍ୟତାର ଅରୁଦ୍‌ବଗ୍ନ ଇଲାକାରୁ
ତଳେ ଦଣ୍ଡେ ଚଗ୍ ମାଟି
ପରିଚିତ ନଈ ଗ୍ରୁଢ
ଧଳାଘର—ଜେଲଘର
ଧୋବାଭୂଠ—ଦଉଡ଼ିରେ ଶୁଖା ଲୁଗା ଢେଉ
ଦୋଳରେ ଗାଆଁ ର ଝିଅ
ଲଙ୍ଗଳ ଠିକଣା ମାଟି
ନଣନ୍ଦ'ମୁଣ୍ଡ ବାନ୍ଧେ ନୂଆ ଖଇଜୋଡ଼ ।

ଦୂରରୁ ନିକଟ
ନିକଟରୁ ଦୂର ॥

ପାକ୍ ପାକୁ ପାଟି କରି ଏରୋପ୍ଲେନ୍
ଅପରାହ୍ନ୍ ପୋଷାକରେ ରୂପା-କାଠ ଅନେକ ଖଜୁର,
ବାର୍ଣ୍ଣିସକରା ଆକାଶ ରୌଦ୍ରସ୍ନାତ
ଏରୋଡ୍ରମ ଭାଆଁ ନୟନ୍‌ଲୋର ।

ଗୀତରେ ସ୍ୱର୍ଗ-ବାଞ୍ଛା ଚୈତ୍ର-ରଥ
ନାଲି ନେଳି ଅରୂପ ଶ୍ରେଣି
ଘରଫେରା, ଦୂରଯାତ୍ରା
ମେଳିଛାଣି, ଛନ୍ଦାନ୍ତର ଅନାହତ ସୁର ।

ଦୂରରୁ ନିକଟ
ନିକଟରୁ ଦୂର ॥

ଅସରନ୍ତ ସ୍ୱପ୍ନ ଶୋଭା
ଏଠି ନାହିଁ, ସେଠି ନାହିଁ
ଅତଳ ଗହ୍ୱରେ ନାହିଁ——ଉତ୍ତୁଙ୍ଗର ଚେତନାରେ ନାହିଁ
ଜୀବନ ଓ ମୃତ୍ୟୁ ଯୋଜି
ସ୍ୱପ୍ନ ଜାଗରଣ ଯୋଜି
ରଙ୍ଗେ ଖାଲି ଅବଶେଷ
ଅକ୍ଳାନ୍ତ ମୁହୂର୍ତ୍ତରେ ଅତୃପ୍ତିର ସୁର ।
ପୁଣି ଫେରା ସୌର ପଥ ରୌଦ୍ର ଝିଲମିଲ
ଇଥରର ଶୂନ୍ୟ ହୃଦ ମେଘ ସମ୍ପାତ
ଶେଷ ନାହିଁ ? ପଥ ନାହିଁ ଶେଷ ?
ଆକାଶର ଚନ୍ଦ୍ରା ମାଟି
ମାଟିଠାରୁ ଅଚନ୍ଦ୍ରା ଆକାଶ ।



# ଆବିଷ୍କାରର ଦୁଃଖ

ନୃସିଂହ କୁମାର ରଥ

ଏଥର
ଅପୂର୍ବ ନୀଳାଲୋକରେ
ଉଦ୍ଭାସିତ ହୋଇ ଉଠିବ ସାରା ଧାତ୍ରୀ
ଅମାବାସ୍ୟା ନିର୍ଘଣ୍ଟ ଛୁଅଁା
ଜହ୍ନର ଏକ ଉନ୍ମାଦନାରେ
ଝୁଙ୍କି ପଡ଼ିବ ଅଙ୍ଗକୁ
ଆଲୋକର ଅସମ୍ଭାବିତ ଉଦ୍‌ବେଳନରେ !

ପବନ ସାଉଁଳାଉଥିବ
ତା'ର ଧୂଳିଧୂସର କ୍ଳାନ୍ତ ଦେହ
ଓ ଅସ୍ତବ୍ୟସ୍ତ କେଶ ।
ଭୟ ବିହ୍ୱଳ ଆଖିମାନଙ୍କରେ
ତା'ର ଯେତେକ ଛାଇଝଟ୍ ;
ସେ ଯେମିତି ପୃଥକ୍ ଏକ ଅସ୍ତିତ୍ୱ
କୌଣସି ଆଲୁସ୍ ତାର ଅସ୍ଥି-ମଜ୍ଜାଗତ ନୁହେଁ ।

ଧୂଳ ଧୂଳ ଅନ୍ଧାରର ପଦା
ଅପସାରିତ ହୋଇଯିବ
ନାଟକୀୟ ଭଙ୍ଗୀରେ
କେଉଁ ଆଶ୍ଚର୍ଯ୍ୟ ପୁଷ୍ପବୀଜ
ଆକର୍ଷଣରେ ଉଚ୍ଛୁଳିତ

ଅଧୀର ଆକାଶ
ଓ ତା'ର ଉଜ୍ଜ୍ୱଳ ପ୍ରତ୍ୟୁଷ
ପହଂଞ୍ଚାଇ ଦେବ
ଏକଦା ପରିଚିତ ମୁହଁମାନଙ୍କ ପାଖରେ ।

ସେତେବେଳେ ଅଣଦାବୁଆ ପୁଅଭ
କାନ୍ଦୁଣୁମାନଙ୍କ ମୁହଁ
ଓ ବୃଷ୍ଟଶାଳୀରେ ଖଡ଼ ଗଡ଼ିଯିବାର
ଗ୍ଲାନକୁ ହିଁ ସେ କେବଳ ବୁଝି ପାରିବ ।

ଶାରଦ ମୁହଁ ସବୁଠ
ଅଚ୍ଛନ୍ନ ଆତ୍ମୀୟତାରେ
ସେ ପୁଣି ଅବସ୍ଥାର ଜଣବ
ନିଜକୁ ଅତି ଅଶ୍ରୁର୍ଣ୍ଣ ସ୍ୱଭବେ ।



# ଶୈଳକଳ୍ପ

## ରାଜେନ୍ଦ୍ର କିଶୋର ପଣ୍ଡା

ହଠ୍ ହଠ୍
ନିର୍ଦ୍ଦିଷ୍ଟ ଏକ ମହାନ୍ ଉଚ୍ଚତାରେ କି
ସ୍ଥିର ହୋଇଯାଇଛୁ ?

ସନ୍ଧ୍ୟାରେ ଫେରନ୍ତି ପକ୍ଷୀ
ଫେର ଆସିଛୁ କ୍ଳାନ୍ତ ହୋଇ
ନୀଡ଼କୁ ।
ଧୀରେ ଧୀରେ ଓହ୍ଲାଇଯାଉଛୁ ପଶୁ
ବାଛୁନେଉଛୁ ନନ୍ଦନ ଗୁହାର ଶାଗୁଆ ଅଂଧାର
ନିଜକୁ ଖୋଜିବାକୁ ।
ଭିନ୍ନ ଭିନ୍ନ ଉଚ୍ଚତାରେ
ପର୍ବତାରୋହୀମାନଙ୍କର ଘାଣ୍ଟି
ସ୍ଥାପିତ, ପରିତ୍ୟକ୍ତ ହୋଇଛୁ ବହୁବାର;
ଅନିବାର୍ଯ୍ୟ ଅବରୋହଣ ।
ନଦୀ ଗଡ଼ିଯାଉଛି ତଳକୁ,
ଶିଖରୁ ଅବତରଣ ।

ନଦୀ କଣ ଛୋଡ଼ ହାତ
ନା ସମୁଦ୍ରର ଦୁର୍ବିନୀତ ଢେଉର ଷଡ଼ଯନ୍ତ୍ର
କେଜାଣି !

କା: ତ: ୧—୧୧

ସମୁଦ୍ର ସହିତ ତୋର ବଚସା ପ୍ରେମ ଓ ବୈର କଥା
ମୁଁ ଶୁଣିଛି ।
ଏପରି ଏକ ସଂପର୍କର
ବୃତ୍ତାଂତ ସାଲିସ୍ ନାହିଁ କି ଅଂତ ନାହିଁ କିଛି ?

ସେଇ ନିର୍ଦ୍ଦିଷ୍ଟ ମହାନ_ଉଚ୍ଚତାରେ
ଯେତେବେଳେ ତୁ
ସ୍ଥିରତା ପରି ସ୍ଥିର ହୋଇଗଲୁ,
ଆକାଶ ଛୁଇଁବାକୁ
ଆଉ କେତେ ବାଟ ଥିଲା ?
ଫାଟି ମୁକୁଳିଯିବା ଆଗରୁ ଠିକ୍
ପଥର ଭିତରେ ବଂଦୀ ଝରଣାର ଆତ୍ମା
ଆଉ
ଗୁମ୍ଫା ଭିତରେ ଥିବା ପଶୁଟିର
ଅଭୂତ ସିଦ୍ଧିର ପ୍ରାକ୍‌ମୁହୂର୍ତ୍ତ ପରି ଅସ୍ଥିରମ୍ ତୁ,
ପର୍ବତ !

ଉନ୍ମୋଚନ କରିଦଅଂନ୍ତୁନ
ସଶବ୍ଦରେ ସ୍ୱର୍ଗ ପହଂଚିଯିବାର ପଥ ?
ଚନ୍ଦ୍ରକାଳ କେବଳ ଦୂରତା ଆଉ ଶୀତଳତା
ଅପ୍ରାପ୍ତି ଆଉ ପତନ ଆଉ ପରାଜୟ ?
ମୃତ୍ୟୁ ଅଉ ଶୂନ୍ୟତା ଇ ତୋର ଶିଖର ?
ସ୍ୱେଚ୍ଛାଳ ତୁ ଚିର କଠିନ, କଠୋର ?
ଯେତେ କୋଟି ପ୍ରତିଧ୍ୱନି ତୁ ଶୁଣିଦେଇଛୁ ଉଗ୍‌ବାଦଗ
ସାଇଁତି ନେଇ ସବୁ
କେଉଁ ଉଠଂନ୍ତୁନ ଥରେ
ପ୍ରବଳ ନାଦରେ ?

ତୁ କଣ ମଂଥିସ୍କଲୁ ସୃଷ୍ଟିକୁ
ସ୍ଥ ଭଡା ଭିତରେ ?

ସବୁ ରଂଗ ସବୁ ଧ୍ୱନିର ସମ୍ବାଦ
ଓଁକାର ଓ ମହାମୀରବତା···
କୋଉଠି କାଠହଣା କୋଉଠି ବୃକ୍ଷପତ୍ର
କୋଉଠି ଏକ କଂଶୋସ୍ତ୍ର ପାବଗ୍ରାର ପାଦସ୍ପର୍ଶ
କେଉଠି ସୂର୍ଯ୍ୟୋଦୟ କୋଉଠି ସୂର୍ଯ୍ୟାସ୍ତ
କୋଉଠି ଅଂଧାର କୋଉଠି ଚଂଦ୍ରାଲୋକ
ନିଦାଘ ଶରତ ଶ୍ରାବଣ···
ମେଘ ଆସେ ପୂର୍ବରୁ ପଶ୍ଚିମରୁ ଈଶାନରୁ ନୈର୍ଋତରୁ
କେତେବେଳେ ଝର୍ଝରିତ ଜଳଧାର···
କେତେବେଳେ ଲୋମକୂପରୁ କୁଂଢ଼ାଙ୍କଡ଼ା ବର୍ଷାଝର···
ସୂର୍ଯ୍ୟ ଲୁଚେନା ତାହାର ଆଡ଼ୁଆଳରେ
ମୁହଁକାଏ ମେଘ ମେଘର ମହିରେ
ଶୂନ୍ୟ ତମାମ୍ ପାଣି ଖସ୍
ବିଂଦୁ ବିଂଦୁ ସ୍ଫୁଲିଂଗିତ ମେଘମାୟାଂ ଜ୍ୟୋତିର୍ଲୀଳା
ଅସୁମାର ଛଟା ଛଟା ଇଂଦ୍ରଧନୁ ଅଣୁ ଅଣୁରେ···

ଗୋଟିଏ ଗୋଟିଏ ଜନ୍ମର ମୁହୂର୍ତ୍ତରେ
ଉଚ୍ଚେ ବ ମଂଥେ
କେଉଁ ଅଦୃଶ୍ୟ ସୂକ୍ଷ୍ମ ମଂଦର ?
ଥିବା ଆଉ ହେବା ଭିତରେ
କାଠିନ୍ୟରେ ଖେଳେ ତରଂଗ—
ବାଷ୍ପାୟନ ହୁଏ ତାରଲ୍ୟରେ—
ସବୁ ପୁଣି ଫୁଟେ ସ୍ଫଟିକରେ...
ବାୟୁ ଭିତରର ସ୍ଥିରତାକୁ

ଶିଖା ଜ୍ୱଳନ୍ତର ଏକତନଅଁ
ସଂଧାଣୁ ଆଉ ଅଂଶାଣୁ ରୁ, ପର୍ବତ !
ଆଶା ରୁ ଆନଂଦ କୁ
ମୁକ୍ତ ଅନ୍ନ ଜାଗରଣ ତପଶ୍ଚରଣ
ପ୍ରେମ ପରମ ମୌନ :

ପକ୍ଷୀ
କ୍ଲାନ୍ତ ଡେଣାର ଫେରେ
ଳଂକୁ
ପୁଣି ଥରେ ଉଡ଼ିଯାଏ ।

ଝଡ଼ଟା ଯାତ୍ରାର ଜଣା ଅଛି
ଅବଶ୍ୟ ସନ୍ତ୍ୱଂଚ ହୁଏ ତା'ର
ଶିଖରଟି ।
ଦଉଡ଼ି ଏବ ଅଷ୍ଟ କୋଣରେ
ହଜାର ଲଟେ ପଣ୍ଡିତ,
ଗୁହାର ଭିତରୁ ଶୁଭେ :
"ଅସ୍ତମସ୍ତଂ ଦେହ !"

କି ଅଦ୍ଭୁତ ଯେ ଲକ୍ଷ୍ୟ ସମସ୍ତ ଏଇ ପରିଚୟ—
ତା ପୁଣି ନିଜ ସହିତ ନାଜଧ !
ନୂଡ଼ି ବୁଢ଼ି ମଣିଷ ସିନା ଆଉ ଝଡ଼ି ଝଡ଼ି ଛୁଟିଯିବା
ଉଭୟ ସୀନ
ଅନୁଭୂତ ହୁଏ ଏକାବେଳକେ
ଏକ ଘଟରେ ।

ଆ, ଜାଗିଉଠ୍, ପର୍ବତ !
ଆ...

କୃଷ୍ଣର ବଂଶୀ, ଶାଂବଙ୍କ ମୂଷଳ
ଶିବଲିଂଗ, ହଳଧରଙ୍କ ହଳ
ନନ୍ଦନ ମୁଗୁର ତୂଳୀ କଲମ ଆଉ ଖଡ୍ଗ
ସ୍ଥିରନିଃସ୍ପନ ବକ୍ଷୋଜଣ, ସୁମହାନ୍ ନୃତ୍ୟମୁଦ୍ରା
ପେଶୀ ଅସ୍ଥି ହୃତ୍ପିଣ୍ଡ...ପିଣ୍ଡ ଆଉ ବ୍ରହ୍ମାଣ୍ଡ
ଫଳ ଭିତରେ ବୀଜ, ବୀଜ ଭିତରର ଅଣୁବୀଜ
ମେଘ ମୁକୁଟ, ସିଂହଠାଣି ପୌରୁଷ, ସ୍ତମ୍ଭ
ନିର୍ବାକ ସତ୍ୟବାଚକ
ଆତ୍ମ ସ୍ପର୍ଦ୍ଧା, କାଳାକାଳର ଦମ୍ଭ
ଚଟାଣ ଅଳ୍ପ ଶିଖର, ସ୍ଥଳଭାଗ ବିପୁଳ
ସମୁଦ୍ର ଯା'ର ଅନ୍ୱେଷଣ ମାନି, ହୁତାଶନ ଯା'ର ଗଭୀର
ପର୍ବତ !
ମହାଶୂନ୍ୟର ପୃଥ୍ୱୀ ତୁ, ଉତ୍ତାଳ ଆଉ ସୁନ୍ଦର;
ଅଭଂଗୁର ଅଦ୍ଭୁତ କଲ୍ଲୋଳ—
ତୋର ଶିଖର ।

ମୃତ୍ୟୁ ଆଉ ଜ ଅମରତ୍ୱ ଆଉ ସେଇଠି,
ଶିଖର ମାନେ ଇ ଅଭେଦ୍ୟ ।

ଦେଖ୍, ଦେଖ୍,
ଇଶ୍ୱରଂକର ଉତ୍ତୋଳିତ ହାତର
ଅଂଗୁଠି ଉପରେ
ଗୋବର୍ଦ୍ଧନ ପର୍ବତ ତୁ;
ଆଉ ଗୋବର୍ଦ୍ଧନ ଚୂଡ଼ାର ଉଚ୍ଚତମ ବିନ୍ଦୁରେ
କେଜାଏ କୋମଳ କଣଳସ୍ଥ ପରି ମୁଁ
ସ୍ଥିରହୋଇ ଠିଆହୋଇଛୁ ।

ସ୍ମି,
ସେଢକ ନିର୍ଦ୍ଦିଷ୍ଟ ହଉଚାବେ ମୁ
ସ୍ଥିର ହୋଇଯାଉଛୁ ।

ଅନବାର୍ଯ୍ୟ ବଜ୍ର ପାଇଁ ଅପେକ୍ଷା କରଛୁ ।।



[ଝଙ୍କାର : ଅକ୍ଟୋବର ୧୯୮୦ରେ ପ୍ରକାଶିତ]

# ଶତ୍ରୁ

କମଳ କାନ୍ତ ଲେଙ୍କା

କିଏ ସେ ତା ସ୍ଥିତି ଖୁଜି
କନ୍ଦର ଗହ୍ବରେ ! ଯେ
ମୋର ଜଣେ ହେଲେ ଶତ୍ରୁ ନାଇ ।

ଶତ୍ରୁ ତ ଅଦୃଶ୍ୟ ନୁହଁ,
ଆଲୁଅର ଉଦାସ ବର୍ଣ୍ଣାଳୀ ;
ଫିଙ୍ଗେ ଦୀର୍ଘଶ୍ୱାସ, ଶତ୍ରୁଟିର ଚକ୍ଷୁର—
ପୁରାତନ କ୍ରୋଧର ଭସ୍ମାଗ୍ନି,
ଶତ୍ରୁଟେ ନଥିଲେ : ଜଣାଯାଏ
ଝାଉଁଳା ମଳିନ ମୁହଁ
କଳଂକିତ ସ୍ୱଜନ୍ତରବାସ୍ପ !

କିଏ ସେ ତ ରତ୍ନ ସିଂହାସନେ
ଢୂଲାଇ ଢୂଲାଇ ଉଦ୍‌ଘୋଷିବ : ଯେ—
ଜଣେ ହେଲେ ଶତ୍ରୁ ନାଇ,
ତେଣୁ ମୁଁ ସମ୍ରାଟ୍‌, ଏବଂ
ଅଦୃଷ୍ଟ ସତ୍ୟର ଉତ୍ତରାଧିକାରୀ !

ଯେ ଶତ୍ରୁର ସାର୍ଥକ୍‌ ଓ ସକଳ ଦାଣର
ନୁହଁଇ ଶରବ୍ୟ, ବା ଶତ୍ରୁଘ୍ନ ସ୍ୱଜନ୍ମ ଯାହାର
ସେତ ଏକ ମେଂଢ଼ା,
ନଜସ୍ୱ ଦୁଃଖର ବୋହ୍ନ

ନିସ୍ତବ୍ଧତା ନାଳକୁ ଫିଙ୍ଗଇ,
କିଏ ସେ ତା ସ୍ରୁତ ଛୁଇଁ
ଦର୍ପ ଏବଂ ଚକିତ ସ୍ମୃତିରେ
କହୁଛ : ସେ ଜଣେ ହେଲେ ଶତ୍ରୁ ନାଇ ।

ଶତ୍ରୁ ଯାହାର ନାଇ
ସେ କି କୋଣାର୍କ ବା
ଖଜୁରାହୋ କୀର୍ତ୍ତିଚନ୍ଦ୍ର, ମାଳଚନ୍ଦ୍ରବାନା ?
ନିରର୍ଥକ ସମୟର ଅତ୍ୟାଚାର,
ଲକ୍ଷ୍ୟଶୂନ ସ୍ୱାର୍ଥଗ୍ରସ୍ତା,
ଅପାଙ୍କ୍ତେୟ, ବିଧ୍ୱସ୍ତ
ଶ୍ୱାସ ଏବଂ ପ୍ରଶ୍ୱାସର ସ୍ଥିତି
ଶତ୍ରୁ ବା କାହାର ନାଇ ?

ଆଲୁଅ ପ୍ରଥମେ ଛୁଏଁ
କାହାକୁ ?
ପାହାଡ଼ ନା ସୁଦୀର୍ଘ ବୃକ୍ଷକୁ !
ଅନ୍ଧାର ପ୍ରଥମେ ଚୁମେ
କାହାକୁ ?
ଜଳକୁ ନା ପାପର ଶିଖାକୁ ?
ଶତ୍ରୁ ତେବେ ଆଲୁଅ
ନା ଅନ୍ଧାରର ଲୁଚକାଳି ?
ଏକ ଶ୍ୱେତ କୁହୁଡ଼ିଆ ଭୂଇଁ,
କିଏ ସେ କନ୍ଦର୍ପ ସ୍ରୁତ ଛୁଇଁ : ସେ
ଜଣେ ହେଲେ ଶତ୍ରୁ ନାଇ ।



('ଅଂତତଃ ନିଷ୍ପ୍ରଭ'ରୁ)

# ଦେବକୀ

## ଶ୍ରୀମତୀ ପ୍ରତିଭା ଶତପଥୀ

ସେମାନେ ଝୁଣିଦେଲେ ମୋ'
                    ରକ୍ତ ମାଂସ ଖଳଖଳ
ସଙ୍ଗିନ ଧନମାନଙ୍କୁ,
ମହାମୂଲ୍ୟ ସମ୍ପତ୍ତିକୁ, ଭାଗ୍ୟକୁ ମୋ'ର
ଟିକି ଟିକି ଛିଣ୍ଡାଇଦେଲେ
ଫିଙ୍ଗିଦେଲେ ମାଟିରେ ଧୂଳିରେ
ମୁଁ ପୁଣି ତ ଦେଖିଲି ସ୍ୱପ୍ନ ।

ଗର୍ଭରେ ଏମିତି ଝାଳ
କଅଁଳା ପିଲାଙ୍କ ରକ୍ତ ଶୁଖିଯାଏ
                    ଖୁଣ୍ଟି ଖୁଣ୍ଟି ଝଡ଼ ସଙ୍ଗେ
ବର୍ଷାକ୍ତ ମାଙ୍କଡ଼ସାର ଜାଲରେ ବନ୍ଧି ରହିବା
                    ବଣୁଏ ଘର,
ସମୁଦ୍ର ମଝିରେ କ୍ରମେ ବୁଡ଼ି ବୁଡ଼ି ଯାଉଥିବା
ବାଲି ଚରଯାଉଥିବା ଦ୍ୱୀପ,
                    ମାତୃତ୍ୱ ମୋ'ର ।

ଦରଦୀ ବସୁଦେବଙ୍କ ଆସ୍ଫାଳନ
                    ପରେ ପରେ
ଆପଣାକୁ ଧିକ୍କାରିବା, ନିଜ ହାତେ କେଶ ଛିଣ୍ଡାଇବା
ଏସବୁ ତ ନିତିଦିନ କଥା ।

ବଂଶର ଝଣତ୍କାରଛନ୍ନ ସ୍ପନ୍ଦଣୀ ଓ
 ଅଭିଶପ୍ତ ସମୟର ହାଇ
 ଜାଳିଯାଏ ଗଛବୃଛ, ଝାଡ଼, ଘାସ
ଶୁଖି ଫାଟି ଯାଉଥିବା ଭୂଇଁର ଆକୁଳ ଡାକ
 ବର୍ଷା ଟୋପେ ପଇଁ
ମାଟି ମୋ’ କମ୍ପଣ ସହେ
ଲୁହ ବୋହିଯାଉଥିବା ଗାଈଟିଏ ପରି
ନଇଁପଡ଼େ ମଥୁରା ନଗରୀ ।

ପାଚେରୀ ସେପାଖେ
ଖର ଖର ପାଦ ଶବ୍ଦ, ଗୋପନ ମନ୍ତ୍ରଣା
ଲାଗେ, କର୍ମ କ୍ଳାନ୍ତ ପ୍ରହରୀଏ ସନ୍ଦେହଭୟରେ
ଶୂନ୍ୟ କୋଳ, ହାହାକାର ଚଖିଯାଏ ସ୍ୱରଅଙ୍କ
କେବେ ତୁ ଆସିବୁ ଖସି କେଳି ତାରାଟିଏ ମୋର
 ବର୍ଷା ଅନ୍ଧାରରେ
ହାତରୁ ଗୋଡ଼ରୁ ବେଡ଼ି ଖସିଯିବ
ସ୍ୱର୍ଗ ପରି ଅଲଂଘ୍ୟ ଅର୍ଗଳ
 ଆପେ ଯିବ ଖୋଲି
ଯମୁନା ନାଚିବ ତୋର ଖେଳ ସାଥୀ ପରି
ସାପମାନେ ଦୋଳି ମାନ ଆଡ଼ କରି ଛିଡ଼ା ହେବେ
 ଫୁଲସେଜ ଗ୍ଳାନି ଯିବ ଭୁଲି ।
ତୁ କ’ଣ ଆସିବୁ ସତେ
ଲୁହ ସବୁ ଶୁଖିଗଲା ପରେ
ଛାତିରୁ ସ୍ପନ୍ଦନ ସବୁ ମରିଗଲେ,
ତୁ କ’ଣ ଓହ୍ଲାଇବୁ ଶୂନ୍ୟମଞ୍ଚ
 ପାଦ ତଳେ ତୋ’ର
ମୁଁ ମାତ୍ର ପାହାଚଟେ ହେଲେ ?

—o—

# ରକ୍ତ ନଈ କୂଳେ

ସୌରୀନ୍ଦ୍ର ବାରିକ୍

ପୂର୍ବ ଶବଠାରୁ ଚାଲି ଆସୁ ଜଣେ ଜନ୍ମ
ସଂସ୍କାର ପାଇବ ଦୁର୍ଯୋଧନ ଗୁରୁଙ୍କର
ଶ୍ମଶାନତ କୁରୁକ୍ଷେତ୍ର ରକ୍ତ ନଈ କୂଳେ
ଆଜି ଜଣେ ଅଛୁ ଜନ୍ମ ପ୍ରାଣର ଦୋସର ?

କୁରୁକ୍ଷେତ୍ର ପରେ ଆଉ କେଉଁ ତୀର୍ଥ ଭୂଇଁ
ରକ୍ତ ନଈ ପରେ ପୁଣି କେଉଁ ବା ଜାହ୍ନବୀ
ଶୂନ୍ୟତାଠୁ ବଳି ଅଛି କେଉଁ ଅଂଧକାର
କି ବଂଧନ ଚପି ଯିବ ସ୍ମୃତର ପୃଥିବୀ !

ଅଛୁ-ଜଣେ ନାହିଁ, ଜଉଘର, ବସ୍ତ୍ରଲଜ୍ଜ
କୁରୁସଭା, ପଶାର ସେ କପଟି ମହତ୍ତ୍ୱ
ଭାଙ୍ଗିଗଲା ଅହଂ ଦୀପ୍ତ କୁରୁଚୂଡ଼ାମଣି
ଅଛି ଖାଲି ଦଗ୍ଧ ଏକ ନିଃସଂଗ ଅସ୍ତିତ୍ୱ ।

ଜୀବନଟା ଖାଲି ଏକ ଶୂନ୍ୟର ଅନ୍ୱେଷା
ଶୂନ୍ୟତା ଭସ୍ମର ଗନ୍ଧେ ପ୍ରତାରିତ ହେବା.
ରଥ ଯିବା ପରେ କୁରୁକ୍ଷେତ୍ରର ଶ୍ମଶାନ
ରକ୍ତ ନଈ କୂଳେ ପୁଣି ଶୂନ୍ୟକୁ ଖୋଜିବା ।

ବଞ୍ଚ ପଞ୍ଚ ହେ ପୂର୍ଣ ହେ ମହା ପୂର୍ଣ୍ଣତା
କେଉଁ ଶୂନ୍ୟତାରୁ ଜନ୍ମ କେଉଁ ଶୂନ୍ୟତାକୁ
କେଉଁ ପୂର୍ଣ୍ଣତାର ଋଣ କର ପରିଶୋଧ
କେଉଁ ପ୍ରାଣ ବଞ୍ଚିଛନ୍ତି କେଉଁ ମୃତ୍ୟୁ ପୁଣି ମରିବାକୁ ?



# ମମତାମୟୀ

ସରୋଜରଞ୍ଜନ ମହାନ୍ତି

ଆଜି କେତେଦିନୁ ଶତାବ୍ଦୀରୁ ଶତାବ୍ଦୀର
ପୃଥିବୀରେ ଲୋଭ ଓ ଦୁଃଖର ଲମ୍ବା
ଶୋଭାଯାତ୍ରା ଲମ୍ବିଛି ଓ ଘୃଣା ବି ସେମିତି
ହିଂସା-ଅସୂୟାର
ମଇଳା ଝୁଲଟ ଟାଙ୍କି
ଜନ୍ମ ସୃଷ୍ଟି ହେବାଦିନୁ ପୃଥିବୀର ଆବୋରି ରହିଛି ॥

ଗୀତା-ବାଇବେଲ୍-କୋରାନର ଲକ୍ଷ ଥର-ଆବୃତ୍ତି ସତ୍ତ୍ୱେ!
ଆଧ୍ୟାତ୍ମିକ ଲୋକଙ୍କ ଭଣ୍ଡାର
ଖାଲି ରହେ, ପ୍ରାଚୁର୍ଯ୍ୟର ପର୍ବତରୁ
ବର୍ଷାର ଓହ୍ଲାଇ ସ୍ରୋତ ଲମ୍ବି ଆସେ ନାହିଁ
ଆଧ୍ୟାତ୍ମିକ ଗୀତଙ୍ଗ ଅମ୍ବରର ଶୁଖିଲା ଭୂଇଁକୁ ॥

ଯ୍ୟଶସରେ ବୁଲୁଥିବା ଆଧ୍ୟାତ୍ମିକ ଅମ୍ବରର ଲୋକ
ଓ ପୃଷ୍ଠରେ ବାଣ୍ଟବଣା ହେଉଥିବା ଜଠରର ଲୋକ
ଓ ଅନ୍ୟାନ୍ୟ ଚେତଣା ମେଲୁଥିବା
ସ୍ନେହ-କରୁଣାର ଲୋକ
ମଣିଷର ସୁଖ-ସ୍ୱପ୍ନ ଚେତନାକୁ ଅକ୍ଟୋପସ୍ ଭଳି
ଲୁଚି ଦେଇଥିବାର ଦୃଶ୍ୟରେ
ପୂର୍ଣ୍ଣଗର୍ଭା ପୃଥିବୀର ଦୁଃଖ ଅକଳନ ॥

ଟେରେସା ମା,
ସ୍ନେହମୟ ଭରିବାକୁ ମଣିଷର ଅଗାମୀ ଦିନର
ସମସ୍ତଙ୍କୁ, ଝୁଣ୍ଟକାଠ ଭାବରେ ପଡ଼ାଇ
ମେଘର ନୟନ-ମଣି ମୁକ୍ତାର ସଦୃଶ
ଝୁଣିଦେବା ସତ୍ତ୍ୱେ, ଦୁଃଖ-ଶୋକ
ଜଳ୍‌ବଳ ମନର ଯନ୍ତ୍ରଣା
ଶୋଷଣ ଓ ମିଛ ପ୍ରତାରଣା
ବେଶ ପରିପାଟି ହୋଇ ଲୁଗା ବଦଳାଇ
ଠିଆହୁଏ ଗର୍ବର ପତାକା ଧରି
ଭଲ ଭଲ ବଚନ ଠାଣିରେ ।।

ଶୋକର ହାତରୁ ସେଇ ଗର୍ବର ପତାକାଟିକୁ
କାଢ଼ି ଫିଙ୍ଗି ଦେବାକୁ ଟେରେସା
ମାତୃମୟ ସ୍ନେହରେ ବାହ୍ୟାଣୀ ହୋଇ
କଲିକତା ନଗରୀର ମୋତିଝିଲ ବସ୍ତିରୁ ନିଜର
ତପସ୍ୟା ଓ ସାଧନାର ଅଧିପୀଠ ଭଳି
ବିଦେଶିନୀ ଯୁବତୀଟି
ବରି ନେଇ ଶୋକ-ଭୂଇଁ ଭିତରର ନାଗରିକତାକୁ
ଅସହାୟ ନିରନ୍ନ ଦୁଃଖୀଙ୍କ ଲାଗି
ଗଢ଼ି ତୋଳି ଠିଆ କଲା 'ନିର୍ମଳ ହୃଦୟ ସଦନ' ।।

ସେ କୌଣସି ଦେଶର ନୁହଁ, ସେ
ନା ଯୁଗୋସ୍ଲାଭିଆ ନା ଭାରତର
ନାଗରିକ, ସେ'ତ ସାରା ପୃଥିବୀର, ମଣିଷ ଜାତିର
ନାଗରିକ, ଯିଏ ପୃଥିବୀର
ସବୁ ଯନ୍ତ୍ରଣାରେ ଦେଖେ ଯୀଶୁ ଆତ୍ମାରେ
ଖ୍ରୀଷ୍ଟଙ୍କ ହେଉଥିବା ଦୃଶ୍ୟ ଓ ଯାତନା

ମତାନ୍ଧ ଗୁଳକୁ
ଆପଣା ଗୁଢରେ ତୋଳି ନେଇଥିବା ଛବି ॥

ରୋଗ ଦୁଃଖ ଶୋକ ଓ ଘୃଣାକୁ
ଜୟ କରି, ମଣିଷକୁ ଯୀଶୁ-ଯନ୍ତ୍ରଣାରୁ
ମୁକ୍ତ କରି, ଯନ୍ତ୍ରଣାର ଶୁଦ୍ଧବାରଟିକୁ
କଣ୍ଠବାକୁ ଶେଷ ଯନ୍ତ୍ରଣାର ଧନ
ନଜର ସଫଳ
ବ୍ୟକ୍ତିଗତ କାମନାକୁ ନୁଶଂସ କରି
ସେ ନଜକୁ କରନେଲେ ତପସ୍ୱିନୀଟିଏ ॥

ଭକ୍ତର-ବନ୍ଧନ ଡେଇଁ ବାତ୍ସଲ୍ୟ ପ୍ରୀତରେ
ପୃଥିବୀକୁ ଓଦାକରି, ମଣିଷର ହୃଦୟରେ ବିଶ୍ୱ-ଜନନୀର
ମୂର୍ତ୍ତିମନ୍ତ ଛବି ହୋଇ, ଦୁଃଖୀ ମଣିଷକୁ
ନାହିଁକଣ୍ଟା ସ୍ନେହ-ସମ୍ପଦର,
ମମତାରେ ସେ ଭଲ୍ ପାଇଛୁ ॥

ମଦର ଟେରେସା :
ସେ ତ
ଶୋକଙ୍କ ଓ ଅସମର୍ଥ ଦୁଃଖୀ ଲୋକଙ୍କର
ନୂଆ ଏକ ଜୀବନର ଭାଷା,
ସେମାନଙ୍କ ଆଶା
ତା'ଆଖିରେ ଲୁହ ହୋଇ ଫୁଟିଯାଏ
ଫୁଲ୍ ଭଳି, ତା' ସ୍ୱରରୁ ମମତାର ବର୍ଷା
ଝରିଯାଇ ଓଦାକରେ
ଦୁଃଖୀର ଉଦାସ ମନ, ଖଣ୍ଡିତଏ ଫୁଲ୍ ପଣ
ସେମାନଙ୍କ ନରଣାର ଅଣ୍ଟା ଗଢ଼ଡାଲେ ॥

ଶବ୍ଦରେ ପ୍ରକାଶ
କରି ହେବ ନାହିଁ ତା' ମନର
ମାତୃମନ୍ତ୍ର କଂପନକୁ; ମାପିହେବ ନାହିଁ ତା' ସ୍ନେହକୁ ।
ସେ ତ ଜଣେ ନାଇବେଲ, କରୁଣାର ବାଙ୍ମୟ ଗଜଲ
ସେ ଜଣେ ଇ ମହାକାବ୍ୟ, ସେ ମମତାମୟୀ,
ମମତାର ଜବତାରେ ଭରପୂର ତା, ହୃତ-କମଲ ॥



# ହଳଦୀ ବସନ୍ତ

ଡକ୍ଟର ପ୍ରସନ୍ନ କୁମାର ମିଶ୍ର

ହକାଳୁ ସକାଳୁ
ହଳଦୀ ବସନ୍ତଟିଏ ଦେଖିଲେ
ମନ ପ୍ରଫୁଲ୍ଲ ହୋଇଯାଏ ।
ସେଟିଏ ଅଜଣା ଶୁଭ ସୋମନତାରେ
ଚିତ୍ତକୁ ସତେଜ କରି
ସେ ଦେଖାଦିଏ ଓ ଲୁଚିଯାଏ ।

ଖୋଜିଲେ ମିଳେନା, ଡ଼ବିଲେ ଆସେନା, ଡାକିଲେ ଫେରେନା ।
ଅଥଚ, ଅକସ୍ମାତ୍ ପୁଣି କେବେ
ଆଖିର ଶାନ୍ତ ହ୍ରଦ ଓ
ନୀଳ କୁଂଜର ଆକାଶରେ
ସେ ଆପେ ଆପେ ଯର ଝାଡ଼େ ।
କୌଣସି ଋତୁର ସ୍ମରଣ ସେ ନୁହେଁ ।

ବର୍ଷତମାମ ତାର ଦେଖା ମିଳିପାରେ
କିନ୍ତୁ, ଏପରି ତ ଅନେକ ବର୍ଷର ଜଞ୍ଜାଳ ବନ୍ଧତ
ହଳଦୀ ବସନ୍ତକୁ ଆଦୌ ଦେଖିନି ମୁଁ ।

କ: ଚ: ୧—୧

ଆମ ଯାଉର ସେଇ ସ୍ରୋତ ହିଁ ଅଛି
ଫୁଲଧା ବସନ୍ତ ଟିଏ ଦେଖିଲେ
ବ୍ୟାକୁଳ ଉଠେ,
ଦେଖିଛ ଦେଖିଛ ବୋଲି ପାଟି କରେ ।

ତାର ସାଥୀମାନେ
ଉତ୍କଣ୍ଠାର ସଙ୍କେତ ବୁଝିଲା ବେଳକୁ
ପକ୍ଷୀଟି ପ୍ରାୟ ଲୁଚି ଯାଇଥାଏ ।
ସେ ହୁଏ 'ମିଛେଇ' ।

ଏମିତି ବି ହୁଏ
ପ୍ରମାଣ ଯୋଗାଇ ନ ପାରି
ପରିହାସ ସିକ୍ତ ହିଁ ଅଟ୍ଟହାସ ଭାମିନୀ-ପଦ୍ମ ପତ୍ର ଆଖି
କରୁଣ ବିଦ୍ରୋହରେ ହୋଇଥାଏ ଛଳ ଛଳ ।

ପଲକେ ଦେଖାଦେବା ଓ ପଲକେ ଲୁଚିଯିବା
ଯେପରି କି ଫୁଲଧା ବସନ୍ତର ଅଭିଜାତ୍ୟ ଓ ବିଳାସ ।

ସେ ଗାଉଥିବା ନୁହେଁ ,...
ଏକ ଅପାର୍ଥିବ ଗୀତ ।
ସେ ନାଚୀ ନୁହେଁ ,...
ଏକ ଆକାଂକ୍ଷିତ ନାଟକ ଦୃଶ୍ୟ ।

ଏକ ଅସ୍ପର୍ଶ ବସନ୍ତ ପରି ସେ ଆସେ,
ଓ ବ୍ୟାକୁଳ ପ୍ରାଣରେ
ମନ୍ଦିରର ସହସ୍ର ଘଣ୍ଟା ବାଜି ଉଠେ ।

ଲୁଣ୍ଠିତ...
ଯୋଉଠି ଏକ ପୁଷ୍ପ-ମଣ୍ଡିତ ଶ୍ୟାମଳ ଅରଣ୍ୟର
ଅସଂଖ୍ୟ ହଳଦୀ ବସନ୍ତ ଆସନ୍ତି ।
କିନ୍ତୁ, ମେ ତ ଏକ ଦୂରବର୍ତ୍ତୀ ଭବନ
ଅର୍ଥ-ପୀଡ଼ିତ ସଂସାରର ମୁଁ,
ସ୍ଥିତ କେମିତି ?

ମୋର ଝିଅଟି
ଏବେ ଦିନେ ଦିନେ
ହଳଦୀ ଲଗାଇ ଗାଧୁଏ
ଏବଂ ଅକ୍ଷିରେ କଜଳ ଝିଙ୍କ
ବସନ୍ତ ଆତ୍ମାର ଏକାନ୍ତରେ ସ୍ପର୍ଦ୍ଧେ
ଝୁରେ
ଯଦି ସେ
କୋଟିଏ ଡାଳରେ
ଯୋଡ଼ିଏ ହଳଦି ବସନ୍ତ
ଦେଖି ପାରନ୍ତା ! !

-- ※O※ --

# ସ୍ମୃତି

ଗୀତ

ପ୍ରମୋଦ କୁମାର ମହାନ୍ତି

ଭୁଲ୍ କଥା କହେ ପକ୍ଷୀ
ମାଛଶୂନ ନଦୀ, ତାରାଶୂନ ରାତି ।
ଯେଉଁଠ ସକଳ ନାହିଁ; ଆଶା ନାହିଁ, ଅଭିଶାପ ନାହିଁ ।
ଅନ୍ତର ଦୁଃଖର କଥା ଗୋଟେ ହେଲେ ସମ୍ବୋଧନ ଚିହ୍ନ ସୁଦ୍ଧା ନାହିଁ !
ଶୁଭୁଅଛେ ଭୁଲ୍ କଳ୍ପନାର ସ୍ୱାଦ ଟୋପା;
ଭୁଲ୍ କଥା କହେ ପକ୍ଷୀ ! ଭୁଲ୍ କଥା ।

ସ୍ମୃତି ଖୋଜେ ଅଖି ବନ ଅନ୍ୟ ବାଟ
ଯେଉଁଠାରେ କଳାପାଣି ଢେଉ ଖାଏ
କାକଟୋଆସ୍ତ୍ରୀ କହଇ କପଟ, ଓ
ପବନର ଚୌପାଦ ନଈ ପାଣି ଚହଲାଏ,
କେଉଁ ମିନାରର ହାତ କମ୍ପାଏ ସ୍ମୃତିକୁ ନେଇକ ?

ସମୟର ବର୍ଗମୂଳ ସ୍ମୃତି ।
ରାଜଧାନୀ ଲୁହର ସହର । ସ୍ମୃତି ସମୟ ସହୁଣ ନଷ୍ଟମିତ ।
କାଂଚ୍ଚୁ ଦଣ୍ଡ ଦେଉଛନ୍ତି ମୂର୍ତ୍ତି ସମସ୍ତ ଘଣ୍ଟାର ।
ଘଣ୍ଟା କହେ ପ୍ରେମର ଉନ୍ନତି ଶବ୍ଦ ସ୍ମୃତିର କବର ।
ସମୟର ବର୍ଗମୂଳ ସ୍ମୃତି । ରାଜଧାନୀ ଲୁହର ସହର ।

ଛୁଟିରେ ଝିଅଙ୍କ ଫାଙ୍କା କମନ୍‌ରୁମ୍ ପରି
ଶୁଭୁଅଛେ ଟୋପା ଟୋପା ଅନ୍ୟମନସ୍କତା
ଭୁଲ୍ କଥା କହେ ପକ୍ଷୀ । ଭୁଲ୍ କଥା !



ମଦ୍ର ରାଜା ଶ୍ରୀରାମଚନ୍ଦ୍ର ଉତ୍କଳ ବିଶ୍ୱବିଦ୍ୟାଳୟ ମୁଦ୍ରଣାଳୟ—୧୫,୦୦୦